"ଯୁବ ଜୀବନର କେତୋଟି ମୁଖ୍ୟ ପ୍ରଶ୍ନବାଚୀ ଉପରେ ଆଧାରିତ
ଏକ ଅନ୍ୟ ରଂଗର ପାରଂପରିକ ନାଟକ"

# ଯୋଡି ମଞ୍ଜରୀ



ନାଟ୍ୟକାର:—ହେମେନ୍ଦ୍ର ମହାପାତ୍ର

# ଯୋଡ଼ି ମହୁରୀ (ନାଟକ)

ନାଟ୍ୟକାର – ଶ୍ରୀ ହେମେନ୍ଦ୍ର ମହାପାତ୍ର
ସୁନହଟ, ବାଲେଶ୍ବର
ପ୍ରକାଶିକା—ଶ୍ରୀମତୀ ସୁଷମା ମହାପାତ୍ର
ସୁନହଟ, ବାଲେଶ୍ବର
ପ୍ରଚ୍ଛଦ – ଶ୍ରୀ ସତ୍ୟନାରାୟଣ ଷଡ଼ଙ୍ଗୀ
ଲିପିକାର – ରଘୁନାଥ ପ୍ରେସ, ବାଲେଶ୍ବର
ପ୍ରଥମ ପ୍ରକାଶ—ତା ୧।୧।୧୯୮୩
ଦ୍ୱିତୀୟ ପ୍ରକାଶ – ତା ୨୧।୧୧।୧୯୯୨
ମୂଲ୍ୟ—ପନ୍ଦର ଟଙ୍କା ମାତ୍ର

# JODI MAHURI (Play)

Written by—**Hemendra Mohapatra**
Published by—**Smt. Susama Mohapatra**
Printed by—**Raghunath Press, Balasore**
First Edition—**1-1-1983**
Second Edition—**21-11-1992**
Price—**Rupees Fifteen only**



ଅସିତ

ଓ

ଶାଶ୍ୱତୀ

ତୁମ ଯୁଗ୍ମ ଜୀବନର ସାଫଲ୍ୟ କାମନା କରି ଏ ପୋଥି ମଞ୍ଜୁଷାକୁ ତୁମର ସଂଯୁକ୍ତ ହାତରେ ଉତ୍ସର୍ଗ କଲି ।

ଇତି

ତୁମର 'ନନା'



## ଯତ୍ କିଂଚିତ୍

ଅନେକ ପ୍ରଶ୍ନ ଓ ପ୍ରଶଂସାରେ ଜଡ଼ ସଡ଼ ହୋଇ ପୁଣି ଥରେ "ଯୋଡ଼ମହୁଷ"କୁ ଆତ୍ମପ୍ରକାଶ କରିବାକୁ ପଡ଼ିଲା । ପ୍ରଥମ ପ୍ରକାଶର ମାତ୍ର ତେରୋଟି ମାସ ଭିତରେ ଯୋଡ଼ମହୁଷ ସାରା ଓଡ଼ିଶା ତଥା ଓଡ଼ିଶା ବାହାରେ ଯେଉଁଭଳି ଭାବରେ ପ୍ରଭାବ ବିସ୍ତାର କରିପାରିଥିଲା, ତାହା ଅନନ୍ୟ ଓ ଏକ ବିରଳ । ଓଡ଼ିଶାର ବିଭିନ୍ନ ପ୍ରକାଶକ ତଥା ନାଟ୍ୟପ୍ରେମୀମାନେ ଯୋଡ଼ମହୁଷକୁ ଆପଣାର କରିବାର ବହୁ ପ୍ରୟାସ କରିଛନ୍ତି । ମୋ ପାଖକୁ ପ୍ରାପ୍ୟ ଯୋଡ଼ମହୁଷ ଯୋଗାଇ ଦେବାପାଇଁ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ବହୁ ଚିଠି ଆସିଛି । ସେଥିରେ ବ୍ୟସ୍ତ ହୋଇ ମୁଁ ପୁଣି ଥରେ ଯୋଡ଼ମହୁଷର ଶୁଭ ପ୍ରକାଶ କଲି । ଯଦିଓ ଆଜିର ନାଟ୍ୟ ସାହିତ୍ୟରେ ସେଭଳି ଶୃଙ୍ଖଳା ଓ ମ୍ବାକର ପ୍ରଭାବ ସେତେଟା ନାହିଁ ତଥାପି ଯୋଡ଼ମହୁଷର କଥାବସ୍ତୁ ସମସ୍ୟା ଓ ସଂଳାପ ଏ ପର୍ଯ୍ୟନ୍ତ ଓଡ଼ିଆ ସମାଜରେ ବେଶ୍ ଉପଲବ୍ଧ । ତେଣୁ ଓଡ଼ିଶାର ଅଗଣିତ ନାଟ୍ୟପ୍ରେମୀଙ୍କ ଅନୁରୋଧରେ ତଥା ଓଡ଼ିଆ ନାଟକକୁ ସମୃଦ୍ଧ କରିବା ଆଶାରେ ପୁଣି ଥରେ ଯୋଡ଼ମହୁଷ ଆତ୍ମପ୍ରକାଶ କରୁଛି । ଆଶା, ଆପଣମାନଙ୍କ ସହଯୋଗରେ ସଫଳତା ଅବଶ୍ୟ ମିଳିବ ।

ପ୍ର କା ଶି କା



ଓଁ ମା

( ଯୋଡ଼ମହୁରୀ ଓ ସ୍ୱରେଦ୍ଧତଙ୍କର
ମନ୍ଦସ୍ୱରରେ ପରିବେଶ କ୍ରିବ୍ ଗମ୍ଭୀର···ପରଦା ଘୁଞ୍ଚି
ଘୁଞ୍ଚି ଯାଉଥାଏ···ସୁସଜ୍ଜିତ ବିବାହ ମଣ୍ଡପ ଯୁବକର
ହାତ ଉପରେ ଯୁବତୀର ହାତ ଥରୁଥାଏ ମନ୍ତ୍ରସ୍ନାତ
ସୂତାରେ ହାତ ଯୋଡ଼ିକ ବାନ୍ଧ ଯାଉଥାଏ, ହାଲୁକା
ସ୍ୱରରେ କେଉଁ ଏକ ଗମ୍ଭୀର ସ୍ୱରେ ଗୀତ ପଦେ
ବେଳେ ବେଳେ ଶୁଣା ଯାଉଥାଏ ।

"ଶୁଭ ଶଙ୍ଖ ବାଜେ ଉଲ୍ଲୁ ଉଲ୍ଲୁକା ଦେଲେ

ବାଜୁଛି ଯୋଡ଼ମହୁରୀ

ବାପଘର ଝିଅ ଯିବ ଶାଶୁଘର

ଆସିଛି ନୂଆ ସବାରୀ"

( ହଠାତ୍ ଅନ୍ଧକାରର ଅଟ୍ଟହାସ୍ୟ । ସମାଜ ସମ୍ରାଟର
ଅଟ୍ଟହାସ୍ୟ, ଅଦ୍ଭୁତ ସେ ସମାଜ, ଲମ୍ବା ଲମ୍ବା ହାତରେ
ରାଜଦଣ୍ଡ, ମସ୍ତକରେ ରାଜମୁକୁଟ, ବକ୍ଷରେ ଧାବମାନ ଦୁର୍ନୀତି
ଓ ଅତ୍ୟାଚାରର କାହାଣୀ । ସମାଜର ବିକଟ ଅଟ୍ଟହାସ୍ୟରେ
ସମସ୍ତେ ଥରି ଉଠିଲେ ଭୟରେ—

ସମାଜ – ବନ୍ଦକର, ବନ୍ଦକର ଏ ଯୋଡ଼ ମହୁରୀ !
ସ୍ୱରେଦ୍ଧତ—( ଆଶ୍ଚର୍ଯ୍ୟରେ ) ତୁମେ କିଏ ? ?

ସମାଜ—ମୁହିଁ ଅଟେ ସମାଜ ସମ୍ରାଟ,
ଯା'ର ବକ୍ଷେ ଦିନେ ନାଚଥିଲା—
ନେପୋଲିୟନ ସୁନେଲି ସ୍ୱପ୍ନରେ,
ହିଟ୍‌ଲର ହଜିଥିଲା—
ହିଂସେପିମା ସୀମାନ୍ତରେ
ରକ୍ତଗଂଗା ତୋଳିଥିଲା ଦୁର୍ଯ୍ୟୋଧନ—
ଦ୍ରୌପଦୀଙ୍କୁ ବିବସନା କରି,
ସେହି ସମାଜ ମୁଁ—
ଅନ୍ୟ ଏକ କୁରୁକ୍ଷେତ୍ର ଅପେକ୍ଷାରେ !

ପୁରୋହିତ—ଅପରାଧ କ୍ଷମାକର ପ୍ରଭୁ !

ସମାଜ—ମମରାଜ୍ୟେ ହୋଇ ପୁଣି ଜାଗ୍ରତ ପ୍ରହରୀ
ଲଂଘନ କରୁଛ କିଆଁ ଶାସନ ନିୟମ ?

ପୁରୋହିତ—ଶାସନ ନିୟମ ମୋତେ ଅଜଣା ମହିମା !

ସମାଜ—ଯୁବକକୁ ହତ୍ୟାକର—
ପକ୍ଷଚ୍ଛେଦ ବେକାରି ଖଡ଼ଗରେ
ଯୌବନକୁ ଜାଳିଦିଅ ଯୌତୁକ ଅଗ୍ନିରେ,
ଆଜ ଯୁବତୀର ସୀମନ୍ତକୁ,
ଭରିଦିଅ କଳଙ୍କ କାଳିରେ !

ଯୁବକ ଓ ଯୁବତୀ—( ଚିତ୍କାର କରି ଉଠିଲେ ) ନା !!

ସମାଜ—ଯାଅ, ଧ୍ୱଂସକରି ମହୁରୀକୁ—
ବେକାରି ଖଡ୍‌ଗ ଆଉ ଯୌତୁକ ବଜ୍ରରେ !

ପୁରୋହିତ—ଶିରେଧରି ତବାଦେଶ, ଯାଉଛି ମହିମା

ପ୍ରସ୍ଥାନ କରନ୍ତ ନ ଆ ସମାଜ ଜସ୍ସମ !

( ସମ୍ମାନ ଦେଖାଇ ଚାଲିଗଲେ)

ଯୁବକ — ଆମେ କିନ୍ତୁ ମନ୍ଥନ କରିବୁ ତୁମ ରକ୍ତ ସମୁଦ୍ରକୁ ।

ଯୁବତୀ—ଭରିବୁ ସୀମନ୍ତ ଆମ ସମୁଦ୍ର ଚନ୍ଦ୍ରରେ,

ଯୁବକ—ଐରାବତ ଦନ୍ତାଘାତେ ଘୁଞ୍ଚିବ ବେକାରୀ ।

ଯୁବତୀ—ଆମେ ହେବୁ ବିଷ୍ଣୁ ପ୍ରିୟା ପ୍ରକୃତି ବୈକୁଣ୍ଠେ ।

ଯୁବକ—ପୀୟୂଷ ପିଇବୁ ଆମେ ଅମରତ୍ୱ ପାଇଁ ।

ଯୁବତୀ - ଆଉ ତୁମେ ?

ଯୁବକ—ଶକ୍ତ ହସ୍ତେ ଫେରିପିବ ବିଷ ପାନ କରି ।

ସମାଜ – ସ୍ତବଧ ହୁଅ ପ୍ରଗଳ୍ଭ ଯୁବକ !

ଜାଣିନାକ ସମାଜର ଶକ୍ତି ପରାକ୍ରମ ।

ଦୁଇ ହସ୍ତ ଯା' ର ବେକାର ଯୌତୁକ

କୀଚକ ଇନ୍ଦ୍ରଜିତ ସମ ବୀର୍ଯ୍ୟବାନ

ତାର ବକ୍ଷ ପରେ ପୁଣି ଗର୍ବ ଅଭିମାନ ?

ଯୁବକ – ଆସ୍ଥା ନାହିଁ ଆମ ସମାଜ ଶାସନେ ।

ଯୁବତୀ—ଭୟ କରୁନା ମଧ୍ୟ କୀଚକ ଖଡ୍‌ଗକୁ ।

ସମାଜ – ବୃଥା ବାକ୍ୟାଳାପେ ନାହିଁ ପ୍ରୟୋଜନ

ଚେଷ୍ଟା କର ତିଷ୍ଠିବାକୁ ସମାଜ ସମ୍ମୁଖେ !

ଆସ ହେ ବୀର ଶ୍ରେଷ୍ଠ ପ୍ରବଳ ପ୍ରତାପି—

ବେକାର ପ୍ରବର !

(ଅଟ୍ଟହାସ୍ୟରେ ଚାବୁକ୍ ଧରି ଆସିଲା ବେକାର ରାକ୍ଷସ)

ବନ୍ଧନକର ଉଦ୍ଧତ ଯୁବକେ-

ପକ୍ଷ ତାର ଛେଦନକର ତୀବ୍ର କଷାଘାତେ !

ବେକାର—( ଚକ୍ରାର କରି ଉଠିଲା ହସକୁ ନେଇ )
ଆସହେ ଯୁବକ !

ସମାଜର—ଶୃଙ୍ଖଳରେ ହୋଇ ଶୃଙ୍ଖଳିତ-
ସହିବ ରାକ୍ଷସର କଣ୍ଟକିତ ଚାବୁକ୍ ପ୍ରହାର
( ଯୁବକକୁ ବେକାରସ୍ତମ୍ଭରେ ବାନ୍ଧିଦେଲା)

ଯୁବକ--ତଥାପି କଣ୍ଠରେ ଥିବ ନିର୍ଭିକ ସ୍ଲୋଗାନ
ଯୁବତୀ--ବଜ୍ରସ୍ୱ ନିଷ୍ଠସ୍ୱ ହେବ ଯୁବ ସମାଜର !

ସମାଜ—କାହିଁ ଗଲ ଯୌତୁକ ଯାଚକ !

ତୁମ ବିନା ବର୍ଷିଟ ସ୍ୱଜନ ଆଜ
କରେ ଆର୍ତ୍ତନାଦ
( ଅଟ୍ଟହାସ୍ୟରେ ଚାବୁକଧରି ଆସିଲା ଯୌତୁକ ରାକ୍ଷସ )
ବନ୍ଦ କର ଉଦ୍ଧତ ଯୁବାକୁ,
ସୀମନ୍ତରେ ଭରିଦିଅ ଯାବତୀୟ କଳା,
ଯୌତୁକର ନାଗଫାଶେ ବାନ୍ଧ ତା ଯୌବନ –
ନିକ୍ଷେପ କର ତାରେ କ୍ଷାରାର୍ଦ୍ଧ ସମୁଦ୍ରେ !

ଯୌତୁକ—( ଚକ୍ରାର କରି ଉଠିଲା ହସକୁ ନେଇ )
ଆସ ହେ ଯୁବତୀ !
ଯୌତୁକ ଉଗ୍ର କଷାଘାତେ—
ରକ୍ତେ ତୁମ ଭରିଯାଉ—
କଳଙ୍କର ଅନେକ କାଳିମା
( ଦେଜ ସ୍ତମ୍ଭରେ ଯୁବତୀକୁ ବାନ୍ଧିଦେଲା )

ଯୁବତୀ— ତଥାପି ଭୁଲିବୁ ନାହିଁ ଆମର ପ୍ରତିଜ୍ଞା !

ଯୁବକ—ଘର୍ଙ୍କି ଦେବୁ ସମାଜର ଏକଚ୍ଛତ୍ର ବାଦ ।

ସମାଜ—ବେକାର ! ! !

(ଗର୍ଜି ଉଠିଲେ ଚାବୁକ ମାରିବାକୁ ଇସାରା ଦେଇ )

ଯୁବତୀ—ମାନବୁନ ସମାଜର ଅନ୍ଧ ସମ୍ବିଧାନ !

ସମାଜ—ଯୌତୁକ ! !

(ଗର୍ଜି ଉଠିଲେ ଚାବୁକ ମାରିବାକୁ ଇସାରା ଦେଇ)

ବେକାର—ମୁଁ ବେକାର ! ( ହସରେ ଚାବୁକ )

ଯୁବକ—( ଯନ୍ତ୍ରଣାରେ ) ଇନ୍‌କ୍ଲାବ !

ଯୌତୁକ—ମୁଁ ଯୌତୁକ ! ( ହସରେ ଚାବୁକ )

ଯୁବତୀ—( ଯନ୍ତ୍ରଣାରେ ) ଜିନ୍ଦାବାଦ୍ :

(ଏହି ପରି ସନସନ ଚାବୁକ ହସ ଓ ସ୍ଲୋଗାନରେ ମଞ୍ଚ ଫାଟି ପଡୁଥାଏ । ଯୁବକ ଯୁବତୀ ରକ୍ତ ଜର୍ଜରିତ ହୋଇ ସ୍ଲୋଗାନ ଦେଇ ଦେଇ ତଳେ ପଡ଼ିଲେ)

ସମାଜ—( ହସି ଉଠିଲେ ଖୁବ ଭୟଙ୍କର ଭାବରେ )

ମୁଁ ସମାଜ ହସୁଛି; ହାଃ ହାଃ ହାଃ

ଅଂଧାର—

ଏ ଅଂଧ ସମାଜର ଜନ୍ମ ଓ ଇସ୍ତ୍ର ବାସ୍ତବତାକୁ ଯେଉଁମାନେ ଉପଲବ୍ଧ କରିଛନ୍ତି, ସେମାନେ ହେଲେ—

Casting,

ସମାଜ ସମ୍ରାଟ—

ମହାମନ୍ତ୍ରୀ ବେକାର—

ଦୁର୍ଦ୍ଧର୍ଷ ସେନାପତି ଯୌତୁକ—

ଶିଶିର –

ସୁବୋଧ —

ଅମର —

ଓ

ସୁରେଶ—

ଯୋଗେଶ -

ଲତା

ଶଙ୍କର—

ସାବିତ୍ରୀ

ମନ୍ମଥ—

ସୋମନାଥ –

ଇନ୍ଦ୍ରଜିତ—

ରଘୁମିଶ୍ର—

ଚପୀ ଏବଂ

ଆପଣମାନେ—

# ପ୍ରଥମାଙ୍କ

## ( ପ୍ରଥମ ଦୃଶ୍ୟ )

( ସୁବର୍ଣ୍ଣରେଖା, ଖୁବ୍ ମନ୍ଥର ଗତିରେ ଚଳି ଚଳି ଯାଉଥାଏ, କୂଳରେ ଏକ ଗ୍ରାମ ଏବଂ ପୁରୁଣା ମନ୍ଦିର, ଉପରେ ନୀଳ ଆକାଶ, ପଶ୍ଚିମରେ ଅସ୍ତଗାମୀ ସୂର୍ଯ୍ୟ, କିନ୍ତୁ ସେଦିନ ଥିଲା ପୂର୍ଣ୍ଣିମା । ସନ୍ଧ୍ୟାର ସୌନ୍ଦର୍ଯ୍ୟ ପରିବେଶଟିକୁ ଖୁବ୍ ହାଲୁକା କରୁଥିବା ବେଳେ ନାଉରିଆ ଦଳର ଗୀତ ସେଥିରେ ବାଧା ସୃଷ୍ଟି କରୁଥାଏ ସନ୍ଧ୍ୟା ଆରତିର ଘଣ୍ଟାରେ ପଡ଼ିଲା ସନ୍ଧ୍ୟାଗଲା, ଗୋଧୂଳିର ଜ୍ୟୋତ୍ସ୍ନାରେ ମଞ୍ଚ ଆଲୋକିତ ହେଲାରୁ ଦେଖାଗଲା ଶଙ୍କର ଓ ମଧୁସ୍ମିତା ମନ୍ଦିର ତଳେ ଗଳ୍ପରେ ଚାଲିବାରେ ବ୍ୟସ୍ତ । ନୌକାରେ କିଏ ଜଣେ ଯୁବକ ଓ ଯୁବତୀ ନଦୀ ବକ୍ଷରେ ଆସେଇ ଗଲେ । ଗୀତ--

"ମନଚୋରା ହସେରେ" ମନ୍ଦିର ଭିତରୁ ଅଧିକାର ମିଶ୍ର, ପ୍ରତ୍ୟେକ ଛନ୍ଦରେ ଧର୍ମ ପରାୟଣତା ଓ ନୈଷ୍ଠିକତାର ସ୍ପଷ୍ଟ ଚିହ୍ନ, କିନ୍ତୁ ? ତାଙ୍କୁ ଡର ଶଙ୍କର ମଧୁସ୍ମି ଲୁଚିଗଲେ. ସେ ବାହାରୁ ଅଛିନ୍ତି ଇନ୍ଦ୍ରଜିତ, ବିଦେଶରୁ ଫେରିଛନ୍ତି ନିଜ ଜନ୍ମଭୂମିକୁ । ଚହ୍ଲା ଅଚହ୍ଲା ସ୍ଥାନରେ ଖୋଜିଛନ୍ତି ନିଜର ଅତୀତ । ତାଙ୍କୁ ଦେଖି ମିଶ୍ର ବୁଝିଛନ୍ତି )

ଇନ୍ଦ୍ର—(ଦେଖିଛନ୍ତି ଚତୁର୍ଦ୍ଦିଗ) ଏଇ ନଈ··· : ଏଇ ମନ୍ଦିର···
ବୋଧହୁଏ ସେଇଠି ସେ ଅଶ୍ୱତ୍ଥ । ତେବେ···
ଏଇଟା କଣ – ରଂଗପାଟଣା ·· ?

ମିଶ୍ର—ହଁ ବାବୁ ! ଏଇଟା ସେହି ନୁଖୁରୀ ଝାଙ୍ଗରୀ ରଂଗପାଟଣା ।

ଇନ୍ଦ୍ର--( ଅନ୍ୟସ୍ୱର ଶୁଣି ଅପ୍ରସ୍ତୁତ ହେଲେ ଏବଂ ପଶ୍ଚାତ୍ୟ
ଗୃହିଁଲେ ) ଆପଣ··· ?

ମିଶ୍ର—ହରିହେ, ଗଧେଗୋବିନ୍ଦ, ମୋ ଘର ଏଇ ଗାଁରେ, ଚର
ଚାଇଁ ଠାକୁରଙ୍କୁ ଡାକିବା ମୋର ନିତିଦିନିଆ କାମ,
କିନ୍ତୁ···ଆପଣ ?

ଇନ୍ଦ୍ର—ଜଣେ ବିଦେଶୀ, କିନ୍ତୁ ଜନ୍ମ ମୋର ଏଇ ମାଟିରେ ··

ମିଶ୍ର—(ଆଶ୍ଚର୍ଯ୍ୟରେ) ଏଁ ! ଏଇ ଗାଁ'ର ପୁଅ··· ?

ଇନ୍ଦ୍ର—ହଁ, ଜଗନ୍ନାଥ ମହାନ୍ତିଙ୍କୁ ଜାଣନ୍ତି ?

ମିଶ୍ର—( ଡରିଗଲେ ) ଜଗନ୍ନାଥ ମହାନ୍ତି··· ? ଓ, ବିଚରା
ଜେଲରେ ସଢ଼ି ସଢ଼ି ମଲା !

ଇନ୍ଦ୍ର—ହଁ ସେହି ଖୁନୀ ସ୍ମଗଲର୍‌ର ଭବିଷ୍ୟତ ମୁଁ, ସୁରଜିତ
ମହାନ୍ତି । ଆଉ···ସୋମନାଥ ମହାନ୍ତିଙ୍କୁ ଜାଣନ୍ତି ?

ମିଶ୍ର--(ଅପ୍ରସ୍ତୁତ ହେବଲ ) ହରିହେ, ଗଧେ ଗୋବିନ୍ଦ···

ଇନ୍ଦ୍ର—ତାଙ୍କର ପ୍ରାଥମିକ ଚେଷ୍ଟାରେ ମୁଁ ଆଜି ଜଣେ
**Established Engineer** ମା'ର ଖୁନ ଓ
ବାପାଙ୍କ ଜେଲ୍ ପରେ ମୋତେ ନେଇ ସେ
ଅନାଥାଶ୍ରମରେ ଛାଡ଼ିଥିଲେ ଏବଂ ତାଙ୍କରି ତତ୍ତ୍ୱାବଧାନ
ରେ ମୁଁ **Scholarship** ପାଇ **Foreign**ରେ ଥିଲି ।

ଗଲ୍ Week ରେ Indiaକୁ ଫେରଣ୍ଡି । ତାଙ୍କୁ ଅନେକ ଶଠି ଦେଇଛନ୍ତି, କନ୍ତୁ ଉତ୍ତର ପାଇନ । ତେଣୁ ଆଜ ଖୋଜ ଖୋଜ କୃତଜ୍ଞତା ଜଣେଇବାକୁ ଆସିଛନ୍ତି । ପଯ ପନର ବର୍ଷ ହେଲ ତାଙ୍କ ସହିତ କୌଣସି ସମ୍ପର୍କ ନାହିଁ । ତାଙ୍କ ଖବର କଣ୍ଟି କହି ପାରବେକ ?

ମିଶ୍ର--ହଣଦେ, ଘଧେ ଗୋବନ୍ଦ, ଯୋଜ ଜମାଦାର ତୁମ ବାପାଙ୍କୁ ଜେଲ ଭିତରକୁ ନେଇ ଯାଇଥିଲେ, ସେହ ସୋମନାଥଙ୍କୁ ଖୋଜୁଛ ?

ଇନ୍ଦ୍ର—ଅପଣ ତାହାଲେ ଆମର ଅଗ୍ଗତକୁ ମନେ ରଖିଛନ୍ତ ?

ମିଶ୍ର--ବାବା ! ତମେ ସିନା ଏ ମିଶ୍ର ମଉସାକୁ ଭୁଲିଚଲି, ହେଲେ ମୁଁ, ତୁମର ବଂଶ ପାଇଁ, ଏ ମଧରରେ ପାପ ଜାଳ ଜାଳ ବୁଢ଼ା ହୋଇଚଲି ।

ଇନ୍ଦ୍ର—(ଆନନ୍ଦରେ ଗୃହିଁଛନ୍ତ ) ମିଶ୍ର ମଉସା !

( ଜ୍ହାର ହେଉଥିଲେ )

ମିଶ୍ର-ବୁଢ଼ାଟିଏ ହୋଇଥାଅ ବାପା ! ଏତେଦନ ପରେ ଏ ଝାଙ୍ଗର ଭୂଇଁ କଥା ମନେ ପଡ଼ଲ୍ନା ?

ଇନ୍ଦ୍ର—ନା ମଉସା ! ମୋର ଆଉ ଏଠି କାମ କଣ ?

ମିଶ୍ର—ଏଁ ! କ କଥା ? କାମ ନାହିଁ ? ପୁଣି ରଂଗଡାଙ୍ଗା ଗାଁରେ ! ହବଦେ, ଘଧେ ଗୋବନ୍ଦ ଯେଉଁ ଗାଁର ଧୂଳ ମାଟିରେ ତୁମ ସପ୍ତ ପୁରୁଷର ରକ୍ତ ମିଶିଛି, ସେହ ଗାଁରେ ପୁଣି କାମ ନାହିଁ ?

ଇନ୍ଦ୍ର—କେବଳ ସେ ଅଗ୍ଗତଟା ଛଡ଼ା ଏଠି ଆଉ ଅଛି କଣ ?

ମିଶ୍ର—ଏତେ ଶିଘ୍ର ଏତେବଡ଼ ଅଗ୍ଗତଟାକୁ ଭୁଲିଗଲ ପୁଅ !

ଇନ୍ଦ୍ର — ସତରେ କ ନାନ୍ଦ ମ ସେ ଦୃଶ୍ୟ ! ଏଇ ନନ୍ଦୀକୂଳରେ,
ଏଇ ମନ୍ଦିର ନିକଟରେ ଅମ ଝିଅଟିର ବାଲିଘରଟା
ଭୁଷୁଡ଼ି ପଡ଼ିଥିଲା ।

ମିଶ୍ର — ତେବେ, ପୁଣି କାହିଁକି ସେ କୁମ୍ଭୀର ପ୍ରୀତି ?

ଇନ୍ଦ୍ର — ମାନେ ?

ମିଶ୍ର — ଘର ଭିଙ୍କି କୁମ୍ଭୀର ନୁହେଁଚ ଆଉ କଣ ?

ଇନ୍ଦ୍ର — ମୁଁ କଚ୍ଛୁ ବୁଝି ପାରୁନ ମଞ୍ଜୁଷା !

ମିଶ୍ର — ତୁମ ବାପାବ ବୁଝିପାର ନ ଥିଲେ, ସେଥିପାଇଁ ସେ
ସୋମନାଥ ମହାନ୍ତର ଚକ୍ରାନ୍ତରେ ପଡ଼ି ଏତେ ବଡ଼
ବଂଶଟାକୁ ଧ୍ୱଂସ କରି ଦେଲେ ।

ଇନ୍ଦ୍ର ଏ କ'ଣ କହୁଛନ୍ତି ମଞ୍ଜୁଷା ?

ମିଶ୍ର — ହଁ, ସେହି ମଞ୍ଜୁଷା, ବାପକୁ ଜେଲରେ ଠୁଙ୍କି, ତୁମକୁ
ଅନାଥାଶ୍ରମରେ ଭସେଇ ଦେଇ ଆଉ ତୁମ ଭଉଣୀ
ଗୀତାକୁ ··

ଇନ୍ଦ୍ର — ମଞ୍ଜୁଷା ! ଗୀତା···

ମିଶ୍ର — ବଂଚଛି, କନ୍ତୁ ପୋଲିସ କୋଠିର କଣ୍ଢେଇ ସାଜି ।

ଇନ୍ଦ୍ର — ସୋମନାଥ ମଞ୍ଜୁଷା ! !··· (ସମ୍ପୂର୍ଣ୍ଣ ଅଧୈର୍ଯ୍ୟ ହେଲେ)

ମିଶ୍ର — ମୁଁ କନ୍ତୁ ତାକୁ ଛାଡ଼ି ଦେଇନ, ତାର ସର୍ବସ୍ୱକୁ ନେଇ
ତାକୁ ଦାଣ୍ଡର ଭିକାରୀ ସଜେଇଛି । ମୁଠେ ଭାତପାଇଁ
ସେ ଦ୍ୱାର ଦ୍ୱାର ବୁଲୁଛି ।

ଇନ୍ଦ୍ର — ମୁଁ···କନ୍ତୁ ନା ନା···ଏ ସବୁ···ମୁଁ କଚ୍ଛୁ ବୁଝିପାରୁନ ।

ମିଶ୍ର — (ନଈରେ କାହାକୁ ଦେଖି ) ସବୁ ବୁଝିବ, ଟିକଏ
ଆଡ଼୍ ଆଳକୁ ଚାଲିଆସ । ଆମ କାମର ଯୋଜନା
ଭିତରେ ରାଧାକୃଷ୍ଣଙ୍କ ରାସଲୀଳାରୁ ଅଧାଏ
ଦେଖିନେବା । ହରିହେ, ରାଧେ ଗୋବିନ୍ଦ ?

(ଚନ୍ଦ୍ରକଡ଼ଲୁ ନେଇ ମନ୍ଦିର ଆଡ଼୍ ଆଳକୁ ଚାଲିଗଲେ, କିନ୍ତୁ ନୌକାରୁ ଓହ୍ଲାଇ ଆସିଲେ ସୁବୋଧ ଓ ଲତା )

ଲତା – ସୁବୋଧ ଭାଇ ! ଏଇ ମନ୍ଦିର···

ସୁବୋଧ – ଆମ ଅତୀତର ଖେଳଘର

ଲତା – କିନ୍ତୁ ··ଆଜି ?

ସୁବୋଧ — ଆମ ଆଗାମୀ ସ୍ୱପ୍ନର କେନ୍ଦ୍ର ବିନ୍ଦୁ

ଲତା —ଏଇଠି ବସି ଆମେ ସ୍ୱପ୍ନ ଦେଖିବା ।

ସୁବୋଧ—ଆଉ ତା'ର ଭିତରେ ବାଲି ଘରଟିଏ ତୋଳିବା ।

ଲତା – ଏ ଅମାନିଆ ସୁବର୍ଣ୍ଣରେଖା ଟା ସହି ପାରିବତ ?

ସୁବୋଧ – ତା'ର ଉଚ୍ଛୁଳା ଲହୁଅ ଉପରେ ଝୁମି ଝୁମି ଝୁଲି ଝୁଲି
ଆମେ ଭାସିଯିବା ଖୁବ ଦୂରକୁ, ହାସ୍ୟ ମେ ଦୁମନ୍ତ
ଆକାଶର ସେପାରିକୁ ।

ଲତା —( ଆବେଗରେ ) ଯେଉଁଠି ନ ଥିବ ଜ୍ୱଳନ୍ତ ସୂର୍ଯ୍ୟର
ଉତ୍ତପ୍ତ ରଶ୍ମି ।

ସୁବୋଧ—ଥିବ କେବଳ ଜ୍ୟୋତ୍ସ୍ନା, ଆଉ ଜ୍ୟୋତ୍ସ୍ନା ବାଦଲ
ତଳର ଅନେକ ଜ୍ୟୋତ୍ସ୍ନା ।

ଲତା —ଯେଉଁଠି ନଥିବ ବୈଶାଖି ଝଡ଼ଜାର ଅସହ୍ୟ ଯନ୍ତ୍ରଣା ।

ସୁବୋଧ—ଥିବ କେବଳ ଫଗୁଣର ହାଲ୍‌କା ହାଲ୍‌କା
ଅନେକ ବାସ୍ନା ।

ଲତା—ଯେଉଁଠି ନଥିବ ପ୍ରତିବଂଧକର କଂଟକିତ୍‌କସ ପାଦେଶ।
ସୁବୋଧ—ଥିବ କେବଳ ମିଳନର ମୁଠା ମୁଠା ଅନେକ ସ୍ୱପ୍ନ।
ଲତା—ଆଜ ତା'ର ଭିତରେ !
ସୁବୋଧ—ଆମେ ଗଢ଼ିବା ଆମ ଜୀବନର ତାଜମହଲ।
ଲତା—ଜ୍ୟୋସ୍ନାରେ ନୁହେଁ

ସୁବୋଧ—ନିବିଡ଼ ଅଂଧାରରେ
ଲତା—ଏ ଜ୍ୟୋସ୍ନାଟା ସହି ପାରେ ନା
ସୁବୋଧ—କିନ୍ତୁ···ତମସାଟା ତ ଅନ୍ଧ
ଲତା—ତେଣୁ ସେ ନିରାପଦ ଅନ୍ଧାର ଭିତରେ
ସୁବୋଧ—ଆମେ ହଜିଯିବା
ଲତା—ନଖୋଜ ନିଜର ସେ ପାଶରେ···
ସୁବୋଧ—କିନ୍ତୁ ଖୁବ୍ ନିବିଡ଼ ଭାବରେ···

(ଦୁହେଁ ମିଶିଗଲେ, ଓଠର ସ୍ପନ୍ଦନରେ ଅନେକ କଥା କହିଗଲେ, ହସି ଉଠିଲେ, ହଠାତ୍ ବନ୍ଦ୍)

ସୁବୋଧ—ମାଂସ ଆଉ ଚମଡ଼ା ଉପରେ ସମସ୍ତେ କ୍ଷମତା ଜାହିର କରିପାରିବେ, ହେଲେ···

ଲତା—ମନ ଓ ହୃଦୟ !
ସୁବୋଧ—ସିଏ କଣ ଏ ନାଲ୍ ଆଖିର ଧମକରେ ଦବିଯିବ ?
ଲତା—ଯେତେବେଳେ ଚମଡ଼ାଟା ରକ୍ତ ମାଂସକୁ ଜାବୁଡ଼ି ଧରି ପାରିବନି, ସେତେବେଳକୁ ହୁଏତ ମନଟା ମରିଯିବ ବା ହୃଦୟଟା ସିଝିଯିବ।
ସୁବୋଧ—ଲତା ! ତୁ ଯଦି ମୋର ଶିରା ପ୍ରଶିରାକୁ କାଟିଦେଇ ପାରିବୁ, ତେବେ ଦେଖିବୁ ମୋର ପ୍ରତ୍ୟେକ ରକ୍ତ

ବିଂଦୁ କଟଣ ଶୋଭାପାଆ କର ମନର ଉପକୂଳରେ
ମଥାବାଡ଼େଇ ତୋର ଜିଂଦାବାଦ୍ କରୁଛନ୍ତି ।

ଲତା--ପୃଥ୍ୱୀ ଉପର ଉପକୂଳକୁ ସମୁଦ୍ର ତରଂଗ ହଜାରେ
ଥର ଚୁମିଯାଏ, କିନ୍ତୁ ସେହି ଊର୍ମି ବକ୍ଷରେ ଜ୍ୟୋତ୍ସ୍ନାର
ଫୁଙ୍କୁରୁ ଥରି ଉଠିଲେ ?

ସୁବୋଧ—ତୋ ଭାଷାରେ ସେମାନେ ଫେରି ଯାଆନ୍ତି ।

ଲତା—ଯାଙ୍କରେ ବ ଉପରୁ ସେ ଲଳମା ଗୁଡ଼ାକୁ ଲୁଟି ନେଇ
ଅତଳମାନରେ ମିଶାଇ ଦିଅନ୍ତି ।

ସୁବୋଧ – କିନ୍ତୁ ବଟ୍ନା ରକ୍ତ ବିଂଦୁ ?

ଲତା—ସମାଜର ନୀତି ସ୍ୱାର୍ଥରେ ସେମାନେ ସଂଜ୍ଞାହୀନ ହୋଇ
ପଡ଼ନ୍ତି ।

ସୁବୋଧ– କାରଣ ?

ଲତା—ସମାଜ ଗୃହେଁ ହଜାର ହଜାର ଟଙ୍କାର ଯୌତୁକ
ଆଜି ମୁଁ ?

ସୁବୋଧ--ମୁଁ ଗୃହେଁ ତୋତେ !

(ଲଣ୍ଠାବୁଦା ଆଲୁଆଲରେ ଅମର ଦେଖାଦେଲା । )

ଲତା—ସୁବୋଧ ଭାଇ ! ( ଆଶ୍ଚର୍ଯ୍ୟ ଆନଂଦ )

ସୁବୋଧ—ହଁ ଲତା; ଆଜିର ଶୁଭ ବେଳାରେ ମୁଁ ପ୍ରତିଜ୍ଞା
କରୁଛି ମୋ ଜୀବନରେ ଆଉ ଦ୍ୱିତୀୟ ନାୟିକା···
ଅସମ୍ଭବ ।

ଲତା—ଏତେ ସହଜରେ ଏତେ ବଡ଼ ପ୍ରତିଜ୍ଞା କରିଦେଲ,
ସୁବୋଧ ଭାଇ !

ସୁବୋଧ—ତୁ କଣ, ପାରିବୁନି ?

ଲତା— (ଛଳଛଳ ଆଖିରେ ) ତୁମର ସ୍ୱାକ୍ଷରରେ ମୋ ସୀମନ୍ତ ଲାଲ ହୋଇଯାଉ, ତୁମେ ମୋ ଜୀବନର ପରମ ଉପାସନା, ଏ ମୋର ପ୍ରତିଜ୍ଞା !

ସୁବୋଧ—ଛି ! ଲତା ! ( ନିଜ ହାତରୁ ମୁଦି ବାହାର କଲେ )

ଲତା—( ଆଶ୍ଚର୍ଯ୍ୟରେ ) ଏ କଣ ?

ସୁବୋଧ-ମୋ ଜୀବନ ( ଲତା ହାତରେ ପିନ୍ଧାଇ ) ତୋ ହାତରେ ବନ୍ଧା ରହିଲା ।

ଲତା—( ଲାଜରେ ତଳକୁ ମୁହଁ ପୋତିଦେଲା )

ସୁବୋଧ—(ସିନ୍ଦୂର ଫରୁଆ ବାହାର କରି ) ମୋ ସ୍ୱାକ୍ଷର !

ଲତା—(ଚମକି ) ସିନ୍ଦୂର ? ?

ସୁବୋଧ—ହଁ, ଏହା ଭିତରେ ଅଛି ମୋର ପ୍ରତିଟି ରକ୍ତ ବିନ୍ଦୁର ସ୍ୱାକ୍ଷର ।

ଲତା—ସ୍ୱେ କରନ୍ତୁ ମୋ ଜୀବନ (ଫରୁଆ ନେଲା, କନ୍ତୁ ମିଶ୍ର ଆସିଛନ୍ତି ଲଣ୍ଠନ ଜଳେଇ )

ମିଶ୍ର-ହରିହେ, ସଧେ ଗୋବିନ୍ଦ, ମୋତେ ବାପା ଭଲ ଦେଖାଯାଉନି ବୁଢ଼ା ଲୋକକନା, ପୁଣି ଗୁଇ ଆଲୁଅରେ ହେଃ ହେଃ ( ଲଣ୍ଠନଟେକି ) ତମେ କିଏ କି ?

ସୁବୋଧ—ମଉସା ! ଆମେ···

ମିଶ୍ର—ଓ···ହେଃ ହେଃ ଶଙ୍କନାସୁକ ପୁଅ ! ହରିହେ ସଧେ ଗୋବିନ୍ଦ ଆଉ ତୁ କିଏ କୋ ମା ! ଓ, ଆମ ଜମାଦାର ଝିଅ କି ? ଏ ଜହ୍ନରାତରେ ନଈ କୂଳରେ

··· ପବନ ଖାଉଛ ? ଖାଅ, ଖାଅ ଏ ସୁବର୍ଣ୍ଣରେଖାର ପବନ ଗସ୍ତ ସୁଆଦଆ ହେଃ ହେଃ ( ସୁବୋଧ ଲତା ଗୃଲଗଲେ ) ହଠାତ୍ ଗଧେ ଗୋବନ୍ଦ ଏ ଆଖି କଣ ନ ଦେଖିଲୁ, ଏ ଗ୍ରନ୍ତ କଣ ନ ଶୁଣିଲୁ ? ଛି ! ଛି ! ଗାଁ ମଝିରେ ପ୍ରେ କ ଲୀଳା !

(ବାହାର ଆସିଲେ ଇନ୍ଦ୍ରଜିତ, ହସ ହସ ମୁହଁରେ କୃଷ୍ଣଚାର ଗୁରୁକମାଡ଼, ସତେ ଯେମିତ ତାହାର ଯାଦୁ ସ୍ପର୍ଶରେ ସେ ସଂପୂର୍ଣ୍ଣ ପରିବର୍ତ୍ତିତ )

ଇନ୍ଦ୍ର—( ଗୋଛାଏ ନୋଟ ବଢ଼େଇ ଦେଇ ) ମୁଁ ରାଜା, ଆଜ ଠାରୁ ସୁରଜିତ ନୁହେଁ ଇନ୍ଦ୍ରଜିତ କନ୍ତୁ···ଗୀତା ?

ମିଶ୍ର – ତା ପାଖକୁ ଗଲେ ତୁମ ଖାନ୍ଦାନ ତଳକୁ ଗୃଲଯିବ ।

ଇନ୍ଦ୍ର – ତଥାପି (ସିଗାରେଟ ଲଗାଇ) ଏବେ ହନଦରେ ଉର୍ବଶୀକୁ ପାଖରେ ପାଇବ···

ମିଶ୍ର—ଧୀର ପାଣି ପଥର କାଟେ, ତୁମ ଉର୍ବଶୀକୁ ସେ ନେଇ ପୋଲିସକୁ ଭେଟି ଦେଲେ, କନ୍ତୁ ମୁଁ ତାର ଏଇ ଉର୍ବଶୀକୁ ତୁମକୁ ଭେଟି ଦେବ ।

ଇନ୍ଦ୍ର – ମୁଁ ଗୃହେଁ ପ୍ରତିଶୋଧ ।

ମିଶ୍ର— ହେଃ ହେଃ ଖାଲି ସିଗାରେଟରେ ନିଆଁ ଧରେଇ ଦେଲେ ସେ ତେଣିକ ଆପେ ଆପେ ପୋଡ଼ିଯିବ ।

ଇନ୍ଦ୍ର—ମୁଁ କାଲ ଯେମିତ ଖବର ପାଏ ! ସେ ମୋର address (Address ଦେଲେ । )

ମିଶ୍ର—ଲୋକ ପରୁର ପରୁର ଗୃରଧାମ ବୁଲ ଆସୁଛନ୍ତ, ମୁଁ ଏତକ ପାରବନ ?

ଇନ୍ଦ୍ର—ମୁଁ ତେବେ ଆଜ ଫେରଯାଉଛି ।
(ସିଗାରେଟ ପାଦରେ ଚୁପି ଦେଲେ)

ମିଶ୍ର—ହଁ ହଁ ମୁଁ ଏଇ ସମ୍ବାଦକ ଭିତରେ ଯିବ, (ବାଟେଇ ଦେଇ ଟଙ୍କାଟକ ଦେଖିଲେ ) ହେଃ ହେଃ ଟଙ୍କାଃ ! କଥା ପଦକର ଦାମ୍ କନ୍ତୁ କମ୍ ନୁହେଁ, ହେଃ ହେଃ ହରହେ ଗୋବନ୍ଦ ।

( ଟଙ୍କା ଧର ଭଗବାନଙ୍କ ଉଦ୍ଦେଶ୍ୟରେ ନମସ୍କାର ହେବା ସମୟରେ ଅମର ଛପି ଛପି ଆସି ଟଙ୍କାଟକ ହାତରୁ ନେଇ ହସି ଉଠିଲେ । )

ମିଶ୍ର—(ଅପ୍ରସ୍ତୁତ ହୋଇ )ଏଁ ! ଏଁ ! କିଏ ? କିଏ ?

ଅମର – ଚିହ୍ନି ପାରୁନା ବୋଧହୁଏ ?

ମିଶ୍ର— କିଏରେ, ବାପା ! ମେହେନ୍ତରକ ? ଦେ ସେଗୁଡ଼ା ପର ଟଙ୍କା

ଅମର--ପର ଟଙ୍କା ? ମୋଟେ ଦେବନ, ଗୁଲିଲି,
Bye (ଯିବାକୁ ଉଦ୍ୟତ)

ମିଶ୍ର—ଅରେ, ଆରେ ନେଇ ଗଲରେ, ଏ ମେହେନ୍ତର ! ବାପା ଅମର ! ଦେଇଯା'ରେ ବାପା !

ଅମର—ଅମର ପାଖରେ ବାହାଶଗଲ ବଳଯିବା ଟଙ୍କାକୁ !

ମିଶ୍ର – ( ହତାଶରେ ) ମୋର ସର୍ବସ୍ୱ ନେଇ ଗଲରେ ଅପଦାର୍ଥ ! ରାଧେ ଗୋବନ୍ଦ ( କାନ୍ଦ ପକେଇବା ସମୟରେ ଅନ୍ଧାର )

## ।। ଦ୍ୱିତୀୟ ଦୃଶ୍ୟ ।।

( ରଂଗପାଟଣା ଗାଁର ସରୁ ରାସ୍ତାଟା ଦୌଡ଼ ଯାଇଛୁ ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ । ଅପରାହ୍ଣରେ ଛପଲଟାକୁ ନେଇ ଆସିଛୁ ଅମର)

ଅମର—ବୁଢ଼ାକ ବୁଝିବ ମନର ବ୍ୟଥା ! ଆରେ ! ଆଜ ତ ଡ୍ରାମା, ମୋ ଗୀତ, ଶ୍ରଦ୍ଧାଚନ୍ଦ୍ର କରନ୍ତ, ଏ ଫାଙ୍କା ରାସ୍ତାରେ ଥରେ ଦେଖିନେଲେ ( କାଗଜ କିଏ ଧରି ନାଟକୀୟ ଭଙ୍ଗୀରେ ସ୍ୱର କର ) ଦେଖି ଝିଅଙ୍କ ଗୁଲି, ଟୋକା ହେଲେ ମାତାଲ ରଖିଲେ ଲମ୍ବାଢଙ୍ଗା, ଗଲେ କଲେଜ ବୁଲି, ସେ ଝୁଲି ଝୁଲି (ଦେଉଛୁ ଆସିଛନ୍ତି ମିଶ୍ର, ଅମରକୁ ଦେଖି ବିରକ୍ତ ହୋଇଛନ୍ତି)

ମିଶ୍ର ମେଦେହନ୍ତର ! ଏ ଦାଣ୍ଡ ମଝିରେ ପ୍ରେମ କ ଯାନ୍ତ !

ଅମର—Oh father ! ତୁମର ଟିକିଏ Prestige ନାହିଁ ! ମାନେ ଇଜ୍ଜତ !

ମିଶ୍ର - ଆ, ହା ! ଇଜ୍ଜତ ବାଲଟା

ଅମର—ଆଜ କଣ ? ଅମର ଦାଦା ବୋଲି ମୁଁ ବଣ୍ଟ famous ହେଲି, ଅଥଚ ତୁମେ ମୋର father, ତୁମ ପାଟିରେ ସେତିକି କଦର୍ଯ୍ୟ Language, କ ଲଜ୍ଜାର ବିଷୟ !

ମିଶ୍ର—ଆ, ହା,···ଲାଜ ଲାଗୁଛୁ ? ଗୁଣବନ୍ତ ପୁଅ ମୋର ?

ଅମର—ସେତିକିଟା ତୁମର ସୌଭାଗ୍ୟ ବାପା

ମିଶ୍ର—ଯା, ବାହାର ! ମୋ ଆଗରୁ ।

ଅମର--ଯାଉଛୁ, କାଲୁ ଆସିବ, ଦରକାର ହେଲେ କହୁ ନେବ ।

ମିଶ୍ର —(ରାଗିଯାଇ) ମେଦେହେନ୍ତର ! (ଅମର ରାଗିଯାଇ ଆରବରେ ଚାହଁଲଗଲା) କୁଳବୁଡ଼ାଇବାବେଳେ କୁଳାଙ୍ଗାରର ଜନ୍ମ, ଧେତ୍ତେରେ ଗଧେ ଗୋବଧ

( ପାନ ଖାଇବା ସମୟରେ ଆସିଛନ୍ତି ଅବସର ପ୍ରାପ୍ତ ପୋଲିସ A. S. I ସୋମନାଥ, ଦେହରେ ପୁରୁଣା ଖାକି ପୋଷାକ, ମୁହଁରେ ଅଯତ୍ନ ଦାଢ଼ୀ ମୁଣ୍ଡର ରୁକ୍ଷ ଦେଶ ଅଯତ୍ନରେ ରୁକ୍ଷ, ହାତରେ ଖାଲି ବ୍ୟାଗ୍ ଚରଣରେ ଚାଲିଥାନ୍ତି, ମିଶ୍ରଙ୍କ ପ୍ରତି ଲକ୍ଷ୍ୟ ନାହିଁ )

ମିଶ୍ର—କ'ଣ କହେ, ଜମାଦାରେ ନ ଦେଖିଲା ପରି ଚାଲିଯାଉଛ ଯେ ?

ସୋମନାଥ—( ଭାବନାରୁ ଫେରି ) ପେଟଜ୍ୱାଳାରେ ଆଖି ଶୁଖି ଯାଉଛି ନନା, ମୁଠାଏ ଭାତ ଛଡ଼ା ଏ ଆଖି ଆଉ କିଛି ଦେଖି ପାରୁନ ।

ମିଶ୍ର-- କଣ କରିବ ଜମାଦାରେ, ସେଇଟା ତୁମର ଦୁର୍ଭାଗ୍ୟ

ସୋମ —ଦୁଇଦିନ ହେଲା କେବଳ ମୁଢ଼ଏ ମୁଢ଼ଏ ତୋରାଣି ପିଇ ବଂଚିଛି । ଅନେକ ଆଶା ନେଇ ସକାଳଠୁ ଯାଇଥିଲି, ଚାଲି ଚାଲି ପାଦ ଅବଶ ହୋଇଗଲା, ମାଗି ମାଗି ତଣ୍ଟି ଶୁଖିଗଲା, ଶେଷରେ ଖାଲି ବ୍ୟାଗ୍, ଖାଲି ହାତରେ ଘରକୁ ଯିବ କପରି !

ମିଶ୍ର—ହଇହେ, ଗାଁ ଆଡ଼େ ଦେଖିଲନି, କାହାଠୁ କିଛି ନେଇ ଧନଟେ ଚଳିଯାଆନ୍ତା ।

ସୋମ—କେହି ଚାହୁଁବେନି ନନା, କାଲି ଧନଯାକ ବୁଲି ବୁଲି ନିରାଶରେ ଶେଷରେ ଆଜ ସହରକୁ ଯାଇଥିଲି ।

ମିଶ୍ର  କେମିତି ଶୁଣିବେ ? ତୁମେ କଣ ଶୁଣୁଥିଲ ? ଗୃକସ୍ଥ ଥିଲାବେଳେ ତ ଇନ୍ଦ୍ର, ଚନ୍ଦ୍ର ମାନିଲେ, ଏବେ ତୁମ କଥା ଶୁଣିବ କିଏ ?

ସୋମ — ନନା କଳାଠାକୁ କେମିତି ଧଳା କରଥାନ୍ତ ?

ମିଶ୍ର - ହେଃ ହେଃ ପଇସା···ପଇସା ସବୁ କରିପାରେ, ତମେସିନା ଘୁଷ ଦେଲ, ହେଲେ ତୁମର ସାଥୀ ପଟ୍ଟନାୟକେ, ସେ କଣ କଲେ ? ତୁମରି ଭାଗ୍ୟକୁ ଟାଣିନେଇ ସେ ଆଜି ଲକ୍ଷପତି ।

ସୋମ — ସେ ଲକ୍ଷପତି ହେବାର ଗୌରବ ଠାରୁ ଉପାସରେ ଆତ୍ମବାଦ କରିବାରେ ବରଂ ଶାନ୍ତି ଅଛି ।

ମିଶ୍ର — ଶାନ୍ତି ? ଜମାଦାରେ, ପେଟ ନିଆଁରେ ତୁମ ବୁଦ୍ଧି ସବୁ ପୋଡ଼ିଗଲାଣି ।

ସୋମ — କଣ କରିବ ? କେବଳ ଝିଅ ବାହାଘରଟା ମୋତେ ସର୍ବସ୍ୱାନ୍ତ କରିଦେଲା ।

ମିଶ୍ର — କାହିଁକି ? ପରଝିଅକୁ ବେକରେ ବାନ୍ଧ ନିଜ ମେରୁଦଣ୍ଡକୁ ବଙ୍କେଇ ଦେଲ ?

ସୋମ — ନବଶ୍ରସ୍ମା ବଚସ, ବାପ ଜେଲରେ ମଲା, ମାଆ କେମିତି ମଲା ଭଗବାନଙ୍କୁ ଜଣା, ପିଲା ଦୁଇଟାଙ୍କ ବିକଳ ସହିପାରିଲିନି···

ମିଶ୍ର— ହେଃ ହେଃ ଜମାଦାରେ, ସେ ଯୁଗକୁ ବାଘ ଖାଇଗଲାଣି । ସେ ମାଡକୁ ନେଇ ଦୁନିଆ ଆଜି ଚାଲୁନି ।

ସୋମ - ଗୁଡ଼, ଯାହା କରିଛୁ, ତାହା ଭବ ଆଉ ଲଭ ନାହିଁ । ପୁଅଟାର କଣ୍ଡ ଗେ ଟାଏ ହୋଇଗଲେ, ମୁଁ ଟିକଏ ନିଃଶ୍ୱାସ ମାରନ୍ତି ।

ମିଶ୍ର— ହରିହେ ସ୍ୱପ୍ନେ ଗୋବନ୍ଦ, ସେଇ ଆଶାରେ ପଡ଼ିଛ ? ହେଃ ହେଃ ଜମାଦାରେ, ପୁଅ ଆଶା ଛାଡ଼, ବରଂ ଝିଅ ପାଇଁ ଚେଷ୍ଟା କଲେ ହୁଏତ ହୋଇପାରନ୍ତା···

ସୋମ କଣ, ଚାକରୀ ?

ମିଶ୍ର— ଚେଷ୍ଟା କରିବା, ହେଲେ ଗଳତ ? କାରଣ ଏ ଯୁଗରେ ଝିଅଙ୍କ ଭାଗ୍ୟ ଆଗ ।

ସୋମ ଝିଅତ ପାଠ ପଢ଼ିଛି ଚାକରୀ କରିବ, ପୁଣି ଗଳ ଅଫିସର ପ୍ରଶ୍ନ କାହିଁକି ?

ମିଶ୍ର ନାନା, ଝିଅମାନେ ଚାକରୀ କରିବାଟାକୁ ଅନେକ ପସନ୍ଦ କରନ୍ତି ନାହିଁ ତେଣୁ ହେଃ ହେଃ ତୁମର···ପଦ···

ସୋମ ନା ନନା, ତଥାପି · ପରିସ୍ଥିତି ପାଇଁ ଅନେକ ସାହାଯ୍ୟ କରିବ ।

ମିଶ୍ର — ତା ତୁମେ ତ କଣ ? ହଉ ମୁଁ ଚେଷ୍ଟା କରୁଛି ତେଣିକ ତୁମର ଭାଗ୍ୟ ।

ସୋମ – ତୁମ ଗୋଡ଼ ଧରୁଛି ନନା, ମୋ ପାଇଁ ଏତକ କରିଦଅ ।

ମିଶ୍ର— ହାଁ ହାଁ, ଥାଉ ଥାଉ, ହରିହେ ସ୍ୱପ୍ନେ ଗୋବନ୍ଦ, ମୋ କଥା କଣ ତୁମେ ଜାଣିନା ? ପର ଆଖିରେ ଲୁହ ଦେଖିଲେ ମୋ ଛାତି ଫାଟିଯାଏ, ମୋତେ ପୁଣି

କହୁଛ ? ହାତର ମାଟଲଣ୍ଠା ହାତେ ହାତେ ପାଣ
ହୋଇଯାଏ, ଛାତ କଣ ? ହଁ ଜମାଦାରେ, ମୋ
ପାଖରେ ତ ସିମିତ କିଛି ନାହିଁ ଦୁଇଟା ନା କେତେ
ଟଙ୍କା ଅଛି ନେଇଯାଅ, ଯାହାହେବ ଗଣ୍ଡେଖାଇ
ପେଟ ଓଦା କରିବ (ବହୁ ଯତ୍ନରେ ବନ୍ଧା ଯାଇଥିବା
ମୁଣିରୁ ଟଙ୍କା ବାହାର କରି ଦେଲେ )

ସୋମ—(ମନ ଖୁସିରେ ନେଇ ) ଯାହା ହେଉ ନନା ଭୁମର
ଧ୍ୟାନ ଆମ ପାଇଁ ଅମୃତ ।

ମିଶ୍ର—ହେଃ ହେଃ ସବୁ ସେଇ ହେଃ ହେଃ ଭୁଧେ ଗୋବନ୍ଦ,
ତାଙ୍କର ଇଚ୍ଛାରେ ସବେ ଆତଯାତ । (ଦୂରକୁ ଦେଖି)
ଜମାଦାରେ, ପଟ୍ଟନାୟକେ କ'ଣ ସିଧାରେ ଆମ
ଆଡ଼େ ଧାଇଁଛନ୍ତି ।

( ଆସିଲେ ଯୋଗେଶ ପଟ୍ଟନାୟକ, ଅବସର ପ୍ରାପ୍ତ ପୋଲିସ
S. I ପ୍ରତ୍ୟେକଟି ଭଙ୍ଗୀରେ ଉନ୍ନତ ଅଭିଜାତ୍ୟର ନଖ୍ୟୁଣ
ଚିହ୍ନ )

ସୋମନାଥ—ନମସ୍କାର ଆଜ୍ଞା !

ମିଶ୍ର—ନମସ୍କାର ପଟ୍ଟନାୟକେ !

ଯୋଗେଶ—( ମିଶ୍ରଙ୍କ ନମସ୍କାରରେ ପ୍ରତି ନମସ୍କାର ଜଣାଇ )
କଣ କହେ, ସୋମନାଥ ବାବୁ ଦେଖାନାହିଁ ଯେ !

ସୋମ—ନାଇଁ ଆଜ୍ଞା ! ସମସ୍ତ ପାଉନ,

ଯୋଗେଶ—ଦେଲାବେଳେ ସମସ୍ତ ମିଳେନ, ବୁଝିଲ ?

ସୋମ—କଣ କରିବ ଆଜ୍ଞା !

ଯୋଗେଶ—କରିବ ଆଉ କଣ ? ଥରେ ମାଘ ଭୁକାଗଲା

ବୋଲିତ କମ୍ବଳଟାକୁ ହକେଇ ଦେଲେ, ଆଉଥରେ
କଣ ମାଘ ଆସିବନି ?

ସୋମ—ବୁଝି ପାରିଲିନି ଆଜ୍ଞା !

ଯୋଗେଶ--ସେତେବେଳେ ବେପାରୁ ବର ଉଠେଇ ନେଇଥିଲେ
ଭଲ କରି ବୁଝି ପାରୁଥା'ନ୍ତ ।

ସୋମ—ନାହିଁ ଆଜ୍ଞା, ସେ ପରିସ୍ଥିତିରେ ଯୋ ନ୍ତେ ବନ୍ଦେଇ
ଦେଇଛନ୍ତି, ସେ କଥା ମୁଁ କଣ ଭୁଲିଯିବ ?

ଯୋଗେଶ– ଖାଇସାରି ହାତ ପୋଛି ଦେଲେ ହାଶୋରଯିବା
ତୁମର ଅଭ୍ୟାସ ।

ସୋମ—ସେ କଥା ମୋର ଆଜିବି ମନେ ଅଛି ଆଜ୍ଞା ! ବର
ଫେରି ଯାଇଥିଲେ ମୋ ଝିଅ ମୋର କଣ କରି
ଥା'ନ୍ତା ? ଆପଣଙ୍କ ଦୟାରୁ···

ମିଶ୍ର—ହରିହେ ସାଧୁ ଗୋବିନ୍ଦ, ସେ ଯେଉଁ ଯୁଗ ଖଣ୍ଡେ
ଯାଇଛି, ତାକୁ କଣ ସହଜରେ ଭୁଲି ହେବ ?

ଯୋଗେଶ—ବୁଝିଲି ମିଶ୍ରେ ! ସେଇଟା ମୋର ଅପରାଧ ।

ମିଶ୍ର – କାହିଁକି ? ସେ ଅଡ଼୍ଆ କଣ ଆହୁରି ଛିଣ୍ଡିନି ?

ସୋମ—ଘର ଖଣ୍ଡିକୁ ତ ବନ୍ଧକ କରି ଦେଇଛି ଆଜ୍ଞା କେମିତି

ଯୋଗେଶ—ଭଣ, ଖାଲି କାଗଜ ଖଣ୍ଡେ ବଢ଼େଇ ଦେଲେ
ହୋଇଯିବ ? ପାଞ୍ଚହଜାର ଟଙ୍କା ଦବତ ତୁମ,
ନହେଲେ ଗୁଣ୍ଟମାସ ଭିତରେ ଘର ଛାଡ଼ି ଚାଲିଯାଅ ।

ସୋମ ହାଁ···ହ ଜା ର !!

ଯୋଗେଶ—ହଁ, ବରପଣି, ଆଉ ତୁମ ଜୋଇଁର ଡ଼ମାଣ୍ଡ ମୋଟର ସାଇକେଲ, ନହେଲେ ସେ ତୁମ ଝିଅକୁ diverse କରିବ, ବୁଝିଲ ?

ମିଶ୍ର—ହଁ ହଁ, ଆଜିର ଯୁଗ, ପୁଅ ଗୋଟାକୁ ଲକ୍ଷେ, ହେଃ ହେଃ ହରିହେ ସବୁ ଗୋବିନ୍ଦ, ମହେନ୍ଦ୍ରଟା ଆମର କୁଳାଙ୍ଗାର ହୋଇଗଲା ।

ସୋମ—( ଦୁଃଖ ଓ ଚିନ୍ତାରେ ଭଙ୍ଗି ପଡ଼ିଲେ ) ଜୋଇଁ କହିଲେ···ମୋ···ଟ···ର···ସା···ଇ···କେଲ ! !

( ପଡ଼ିଯାଉଥିଲେ )

ମିଶ୍ର—ଆହା ··· ହା ··· ଜମାଦାରେ ( ଧରିନେଇ ) ଗୁଡ଼ ପଢନାୟକେ, ବଡ଼ସ ଦୁଇ ଦିନ ହେଲା ଉପବାସ ।

ଯୋଗେଶ—ସେଇଟା ତାଙ୍କର ଅକ୍ଷମତା

ସୋମ—ହଁ, ଠିକ୍ କଥା, କଳାଟାକୁ ଧଳା କରି ପାରିଲିନି, ତାହାହିଁ ମୋ ଜୀବନର ବ୍ୟର୍ଥତା ।

ଯୋଗେଶ-ତାହାହେଲେ ଆମେ କଣ କଳାକୁ ଧଳା କରି ଚାଲୁଚୁ ?

ମିଶ୍ର—ଗୁଡ଼, ତାଙ୍କ ମୁଣ୍ଡ ଖରାପ, ଯାଅ ଜମାଦାରେ ଘରେ ଆଲୋଚନା କରିବା ।

ଯୋଗେଶ—କିନ୍ତୁ ମୋ କଥା ଯେମିତି ମନେ ଥାଏ ! (ମିଶ୍ର ସୋମନାଥଙ୍କୁ ବାଟେଇ ଦେଲେ) ବୁଝିଲ ମିଶ୍ରେ ! ତୁମରି ଯୋଗୁଁ ଏତେ ସବୁ ନାଟ ।

ମିଶ୍ର—ନାଟ ? ହେଃ ହେଃ ପଢନାୟକେ, ନାଟ ଲଗିନି, ଏଇ ଲଗିଲା ଆଉ···ଲଗିବ···

ଯୋଗେଶ—ସେ କାଠରେ ମୋର ଯାଏ କେତେ ଆସେ କେତେ !

ମିଶ୍ର—ହେଃ ହେଃ ଯିବନ, ଖାଲି ଆସିବ, ଘର ପୂରିଉଠିବ ।

ଯୋଗେଶ—କଣ ଆସିବ ? ଘର ପୂରିଉଠିବ ? ମୁଁ କିଛି ବୁଝି ପାରୁନ ।

ମିଶ୍ର—ବୁଝିବେ, ଘର ଭସିଗଲେ ବୁଝିବେ ।

ଯୋଗେଶ—କଣ କଥା ? ଖୋଲି କହୁନା ?

ମିଶ୍ର—ସାନବାବୁ ଜାଲରେ ପଡ଼ିଲେଣି କେବଳ ବାକିଅଛି ଢୋଲ ମହୁଷ୍ଣ ।

ଯୋଗେଶ—( ଆଶ୍ଚର୍ଯ୍ୟ କ୍ରୋଧ ) ମିଶ୍ରେ ! କଏ ? ସୁବୋଧ ?

ମିଶ୍ର—ହେଃ ହେଃ ଆପଣ କିଛି ଜାଣନ୍ତି ନ ?

ଯୋଗେଶ— ମୁଁ ତ ତୁମ କଥା ବୁଝି ବ ପାରୁନ ।

ମିଶ୍ର—ଚାଲନ୍ତୁ, ଘର ପଦାଖିବା କାଠରେ ସବୁ ବୁଝି ପାରିଥିବେ ।

ଯୋଗେଶ—ମୋତେ ଆଶ୍ଚର୍ଯ୍ୟ କରେଇଲ ମିଶ୍ର ?

ମିଶ୍ର—ଚାଲନ୍ତୁ, କିଛି ହୋଇନ, ଆହୁରି ଆଶ୍ଚର୍ଯ୍ୟ ହେବେ ।

( ଚାଲିଯିବା ଘରେ ଅଂଧାର )



## ।। ତୃତୀୟ ଦୃଶ୍ୟ ।।

( ସୋମନାଥ ମହାନ୍ତିଙ୍କ ଘର ଅଗଣା ସିମେଣ୍ଟ କଂକ୍ରିଟ ନଥି ଦରଭଙ୍ଗା ପୁରୁଣା ଘର, କେବଳ ଗୋଟିଏ ଦ୍ୱାର, ଦୁଇଟି ଝରକା ଥିବା ଗୋଟିଏ କୋଠରୀ ଦେଖା ଯାଉଥାଏ ଦକ୍ଷିଣ ପଟରେ ଦରଭଙ୍ଗା ପକ୍କା ତୁଳସୀ ଚଉରା, ବାମପଟେ କୃଅ, କାନ୍ଥରେ ଲେଳେଣ୍ଡି ଅପଠୂ ଫଟୋ, ଅଗଣାରେ ଦୁଇଟି ପୁରୁଣା ଚେୟାର ଓ ଗୋଟିଏ ଟେବୁଲ ପଡ଼ିଥାଏ । ସମୟ ସନ୍ଧ୍ୟା, ସଂଜବତୀଟି ଧରି ଧୀରେ ଧୀରେ ତୁଳସୀ ମୂଳକୁ ଆସିଲା ଲତା, ଠିକ୍ ଏହି ସମୟରେ ଅଦୂରରୁ କୌଣସି ଏକ ବୃଦ୍ଧ କଣ୍ଠରୁ ଟୀକା ଗୋବିନ୍ଦକୁ ପଦେ ଜଣାଣ ଶୁଣାଗଲା, ଲତା ଶଙ୍ଖ ଫୁଙ୍କିଲା ଆସିଲେ ପାର୍ବତୀ ଅର୍ଥାତ୍, ଲତାର ମାଆ )

ପାର୍ବତୀ— ତୋ ବାପା ଫେରି ନାହାନ୍ତି ?

ଲତା— ନା,

ପାର୍ବତୀ— ସକାଳଠୁ ଗଲେଣି···ଆସି ଫଳ ହେଲା । ଏ ବୈଶାଖ ଖରାରେ ଚମ୍ପି ଶୁଖି ଯାଉଛି । ଲତା ଘରେ କ'ଣ କିଛୁ ନାହିଁ ?

ଲତା— କୋଉଠୁ ଆସିବ ? ଦୁଇଦିନ ହେଲା ତ ହାଣ୍ଡି ଚୂଲି ଉପରକୁ ଯାଇନି ।

ପାର୍ବତୀ ନହେଲେ ମୋତେ ଟିକିଏ ଦାଣ୍ଡକୁ ବାଟେଇ ଦେ, ହାତ ଗୋଡ଼ ଧରି କାହାଠାରୁ ହେଲେ କିଛି ଆଣେ ।

ଲତା— ବୋଉ ! ବାପାଙ୍କ କଥାତ ଜାଣୁ, ଏକଥା ଦେଖିଲେ ମୁଣ୍ଡ ପିଟିଦେବେ ।

ପାର୍ବତୀ— ମୁଣ୍ଡ ପିଟିଦେଲେ ପେଟ ପୂରିବନି, ପେଟ ପାଇଁ ଭାତ ଦରକାର ।

ଲତା—ତଥାପି·· ବାପା ଖାଇ କଣ ସହିପାରିବେ ?

( ଆସିଛନ୍ତି ସୋମନାଥ )

ସାବିତ୍ରୀ—ନସହିଲେ ମୋତେ ବାହାର କରିଦେବେ···, ମାରିପକାଇବେ ସେଥିରେ ବରଂ ମୋ ପେଟର ଜ୍ୱାଳା ଲିଭିଯିବ । ମୁଁ ଆଉ ସହି ପାରିବନି, ମୋତେ ଖାଇବାକୁ ଦିଅ ( କାନ୍ଦିପକେଇଲେ ) ମୁଁ ଆଉ ପାରିବନି ।

ଲତା—ବୋଉ ! ତୁ ଏତେ ଅଧୈର୍ଯ୍ୟ ହୋଇ ଯାଉଛୁ ?

ସୋମ—ପେଟ ପୋଡ଼ିଗଲେ ସବୁ ସରିଯାଏ ମା !

ସାବିତ୍ରୀ—(ସୋମନାଥଙ୍କ ପାଟିଶୁଣି ଅପ୍ରସ୍ତୁତ ହୋଇ ତୋ ବାପା ଆସିଲେଣି କି ? ଦିଅ କ'ଣ ଆଣିଛ ? ମୁନ୍ଦାଏ ପାଣି ପିଏ ! ମୋ ତଣ୍ଟି ଶୁଖି ଯାଉଛି ।

ସୋମ—କଣ ଆଉ ଆଣିବି ? ଦିନସାରା ବୁଲି ବୁଲି ଏ ରୁଟିତକ ପାଇଛି, ଖଣ୍ଡେ ଖଣ୍ଡେ ଖାଇ ଅନ୍ତତଃ କିଛି ସମୟ ବଂଚିବା ।

ସାବିତ୍ରୀ—( ବ୍ୟସ୍ତରେ ) ଯାହା ମିଳୁଛି ମିଳୁ, ଲତା ପାଣି ମୁନ୍ଦାଏ ଆଣ !

ଲତା—ଆଣୁଛି, ବାପା ! ଖାଇ··· ?

ସୋମନାଥ—ସେ ପିଲାଟା ବି କେତେ ଭୋକିବ ? ବ୍ୟସ୍ତ ହ'ନା, ତା ସମୟ ହୋଇନି, ଆସୁଥିବ, ତୁ ଯା ପାଣି ଆଣ !
( ଲତା ଯାଉଥିଲା, ସାବିତ୍ରୀ ବ୍ୟାଗ୍ରରୁ ରୁଟି ବାହାର କରୁଥିଲେ ଏହି ସମୟରେ ବାହାରୁ ପାଟି ଶୁଣି ସମସ୍ତେ ବାହାରକୁ ଗ୍ଲହିଁଲେ )

ସୋମନାଥ—ଆଲେ, ମା ! ଦେଖନା, କିଏ ଆସିଲେଣି !
ସାବିତ୍ରୀ—କିଏ ?
ଲତା—ମଉସା ତ ଆସୁଛନ୍ତି
ସୋମ—( ବ୍ୟସ୍ତ ) ଯା, ମା ! ପାଣି କୁମ୍ଭଟା ଆଣ !
ଲତା—( ଯାଉଁଯାଉଁ ) ବାପା ! ··· ଘରେତ···
ସୋମ—ତୁ ଯା, ଆଗ ପାଣି ଆଣ ?
( ଲତା ଚାଲିଗଲେ କୂଅ ମୂଳକୁ )
ସାବିତ୍ରୀ—କିଏ ଆସୁଛନ୍ତି କି ?
ସୋମ—ସମୁଧି, ତୁମେ ଭିତରକୁ ଯାଅ !
( ସାବିତ୍ରୀ ତରବରରେ ଭିତରକୁ ଚାଲିଗଲେ, ଡାକଡାକ ଅସିଲେ ମିଶ୍ର ସାଙ୍ଗରେ ଯୋଗେଶ )
ମିଶ୍ର—ଜମାଦାରେ, ଘରେ ଅଛନା, ହୋ ଜମାଦାରେ !
ସୋମ—ଆସନ୍ତୁ, ଆସନ୍ତୁ ସମୁଧି ! ଆଲୋ ମା ! ପାଣି ଆଣ !
ମଉସା ଆସିଛନ୍ତି ପରା !
ଯୋଗେଶ –( ବିରକ୍ତିରେ ) ଦରକାର ନାହିଁ !
ସୋମ –( ହଠାତ୍ ଆଘାତ ପାଇଲେ ) ଆଜ୍ଞା !···
ମିଶ୍ର—ତୁମ ଝିଅ କାହିଁ ?
ସୋମ— ଝିଅ ? ଏଇତ ଏବେ ଏଇଠି ଥିଲା, ପାଣି ଆଣିବାକୁ
ଯାଇଛି ।
ମିଶ୍ର – ଡାକିଲ ତାକୁ !
ସୋମ—କଣ ହୋଇଛି ? ( କିଛି ବୁଝି ନପାରି ) ଆରେ,
ଲତା ! ଶୀଘ୍ର ଆସ !
ଲତା –( ପାଣି ଟାଣୁ ଟାଣୁ ) ଯାଉଛି ବାପା !

ସୋମ—ଶୀଘ୍ର ଆଣ, କ'ଣ କଥା ? ବସନ୍ତୁ, ବସନ୍ତୁ ମିସ୍ରମୁଣ୍ଡ !
କଣ ହୋଇଛି ନନା ? ଏମିତ ହଠାତ୍ ମୋ ଝିଅ...

ମିଶ୍ର—ତୁମ ଝିଅ ଚୋରି କରିଛି ( ଲତା ହାତରୁ ପାଣିକୁମ୍ଭଟା ଖସିପଡ଼ିଲା )

ସୋମ—( ଆଶ୍ଚର୍ଯ୍ୟରେ ) ଚୋରି ! ! !

ଯୋଗେଶ—ତୁମକୁ ଟିକିଏ ଲଜନାହିଁ, ମୁହଁ ଦେଖାଉଛ ?

ମିଶ୍ର -ତୁମେ କ'ଣ ମାନ ଇଜ୍ଜତ ସବୁ ଘୋଡ଼ ଖାଇଗଲ !

ସୋମ—ଏ ସବୁ କ'ଣ କହୁଛନ୍ତି ଆପଣ ?

ଯୋଗେଶ—ଛି ! ଛି ! ଶେଷରେ ମୋ'ର ସର୍ବନାଶ କରିବାକୁ ବସିଛ ?

ମିଶ୍ର - ତୁମ ଯୋଗୁଁ ତ ଗାଁରେ ଲୋକ ରହିପାରିବେନ

ଯୋଗେଶ—ଘର ଝିଅଟେ, ସେ ପୁଣି ଚୋରି କରୁଛି !

ସୋମ - କଣ, ଆପଣ କହିଯାଉଛନ୍ତି ?

ଯୋଗେଶ - ତୁମ ଝିଅ ମୋ ଘରୁ ଚୋରି କରିଛି

ସୋମ—ନା ନା ଏହା କେବେ ହୋଇପାରେନା

ଯୋଗେଶ—ପ୍ରମାଣ ଗୁହଁ ? କ'ଣ ମିଛେ !

ମିଶ୍ର—ହେଃ ହେଃ ହେଃ ହାତେ ହାତେ ପ୍ରମାଣ

ସୋମ—ନା ନା, ଲତା !

ଲତା— (ଥର ଥର ଗଳାରେ ) ନା ବାପା ! ମିଛକଥା

ମିଶ୍ର ହେଃ ହେଃ ମିଛ କଥା ? ଦେଖିବ ? ଏହି ଦେଖ (ଲତା ହାତରେ ଥିବା ମୁଦି ଦେଖାଇ ) ଏଇଟା କ'ଣ ?

ସୋମନାଥ—( ଲତା ହାତରେ ସୁନାମୁଦି ଦେଖି ଉତ୍ତ୍ୟକ୍ତ ହେଲେ ) ଲତା ! !

ଲତା—ନା ବାପା ! ସତ କହୁଛି, ମୁଁ ଗ୍ରେଫ କରନ (ଥରଜଠିଛି)
ଯୋଗେଶ—ନାଇଁ, ମୁଁ ଥାନାକୁ ଯାଉଛି, ଭଲରେ ଭଲରେ
ଏମାନେ ବାଟକୁ ଆସିବେନ୍ ।
ମିଶ୍ର—ଓହ, ଆପଣଙ୍କରତ ପେଣ୍ଟ ଏକାଜଦ୍ ।
ସୋମ—ନା ସମୂଙ୍ଗ ! ଥାନାକୁ ଯିବାର ଆବଶ୍ୟକତା ନାହିଁ ।
ଏଇଠି ମୁଁ ଏହାର ଫଏସଲ କରିଦେଉଛି ।
ମିଶ୍ର—ଛି, ଛି ! ଏତେ ବଡ ଘରର ଝିଅ ହୋଇ ଚୋ ହାତ
ଗଲ କେମିତ
ଲତା—ନା, ନା ମଉସା ! ମୋତେ ବିଶ୍ୱାସ କରନ୍ତୁ ।
ସୋମ—ତେବେ ଏ ମୁଦ୍ଧ ଆଣିଲୁ କୋଉଠୁ ?
ଲତା—( କହି ପାରନ, ଉପୁରେ ଡାକ ଦେଇଛି ) ବାପା ··· !
ସୋମ—(ଖୁବ ରାଗିଯାଇଥିଲେ, ଲତା ଗାଲରେ ଗୁପଡ଼ାଏ
ପିଟିଲେ) ଚୁପ୍ କର । ତୁ ଶେଷରେ ଗ୍ରେଫ କଲୁ ?
ଲତା—( କାନ୍ଦ କାନ୍ଦ ହୋଇ ) ନା···ବାପା··· !
ସୋମ—ପୁଣି ନା ? ବାହାର କର ସେ ମୁଦ ! ( ବାହାରକରି
ଯୋଗେଶଙ୍କୁ ଦେଲେ ) ନଅନ୍ତୁ ଆଜ୍ଞା ! ( ଲତା
କାନ୍ଦୁଥିବାର ଦେଖି ) ପୋଲିସ ରକ୍ତରେ ଜନ୍ମ
ହୋଇ ଗ୍ରେଫକଲୁ ?
ମିଶ୍ର— ଛି ! ଛି ! ସୋମନାଥ ମହାନ୍ତିର ନାଁଟାକୁ ମାଟିରେ
ମିଶେଇ ଦେଲୁ !
ଯୋଗେଶ—ଗ୍ରେଟ ଲୋକର ପୁଣି ଖାନ୍‌ଦାନ ? ହଁ କହି
ଦେଉଛି, ତୁମର କାହାର ଯେମିତ ଆମ ଘରେ
ପାଦ ନ ପଡ଼େ !

ମିଶ୍ର — ହଉଚିହ ସତେଧ ଗୋବନ୍ଦ ! ଏଥର ଗୃଲନ୍ତୁ ପଟ୍ଟନାୟକଙ୍କ
( ଦୁହେଁ ଗ୍ଳ୍ଲଗଲେ )

ଲ୍‌ତା — (ସୋମନାଥଙ୍କ କ୍ରୋଧରେ ଡ଼ର ଯାଇଥାଏ ) ନା...
ବାପା !

ସୋମ — ପୁଣି ମିଛ ! ( ପୁଣି ପିଟିଲେ )

ପାବର୍ତ୍ତୀ — ଲତା ! ଲତା ! ( ଅଣ୍ଟାଳ ଅଣ୍ଟାଳ ଆସିଛନ୍ତି )
କାହିଁକି ପିଲାଟାକୁ ପିଟୁଛ ?

ସୋମ - କହ, କହ କାହିଁକି ଗ୍ଳେରକଲୁ ? ( ପିଟିଲେ ଓ
ହାଲିଆହୋଇ ଶେଷରେ ଲତାର ଗଳାକୁ ଧର )

ଲତା — ( ଧକଧକ ) ନା ବାପା ! ମୁଁ ମରିଯିବ, ମୋତେ
ଛାଡ଼ିଦିଅ !

ସୋମ — ଛାଡ଼ିଦେବ ? ସୋମନାଥ ମହାନ୍ତିର ଝିଅ ହୋଇ
ଶେଷରେ ବାଂଧୁ ଘରେ ଯାଇ ନାଁ ପକେଇଲୁ ?
ତୋତେ ଆଜ ମୁଁ ... (ଗଳା ଚିପିବାକୁ ଯିବା ସମୟରେ
ପାର୍ବତୀ ଧରିବାକୁ ଯାଉଥିଲେ, ସୋମନାଥଙ୍କ ଧକ୍କାରେ
ତଳେ ପଡ଼ିଯିବା ସମୟରେ ଆ ଛନ୍ତି ଶିଶିର, ଯୁବକ,
କଣ୍ଠରେ ନିର୍ଭିକତାର ସ୍ପଷ୍ଟ ସ୍ୱର )

ଶିଶିର — ( ଆଶ୍ଚର୍ଯ୍ୟରେ ) ବାପା ! ଏ କଣ ?

ଦେଖ୍ ଶିଶିର ! ଲତା କେମିତ ଗୀତା ଘରୁ ମୁହଁ
ଗ୍ଳେର କରିଛି !

ଲତା — ( କାନ୍ଦ କାନ୍ଦ ଅବଶହୋଇ ଶିଶିର ପାଖକୁ ଯାଇ ) ନା
ଭାଇ ! ମୋତେ ବିଶ୍ୱାସ କର ।

ଶିଶିର  ପେଟ ପେଡ ଯାଉଥିବା ବେଳେ ସୁନା ମୁଦ ପିନ୍ଧିବାକୁ
 ତୋ ହାତ ଗଲା କେମିତି, ପୁଣି ବଂଧୁ ଉଚ୍ଚ ?

ପାର୍ବତୀ—ଛି ! ଛି ! ଭଉଣୀ ଘରେ ଯାଇ ନାଁ ପକେଇଲୁ ?

ସୋମ—ମୁଠାଏ ଭାତ ବା ଖଣ୍ଡେ ରୁଟି ଚୋରି କରିଥିଲେ ହୁଏତ
 ଘଣ୍ଟେ ବଂଚ ପାରିଥାନ୍ତୁ ।

ଶିଶିର – ଖାଲି ପେଟରେ ସୁନା ମୁଦ୍ଦ ପିନ୍ଧି ବଂଚ ପାରିବୁ ?

ଲତା—ଭାଇ ! ମୋତେ ବିଶ୍ୱାସ କର……

ଶିଶିର—ଚୁପ୍ ! ଚୋରି କରି ପୁଣି ମୁହଁ ଦେଖଉଚ୍ଛୁ ! ଲଜ୍ଜା ନାହିଁ
 ତୋତେ ।

ସୋମ—ତୋ ଭଳି ସ୍ତ୍ରିଅ ମରିଯିବା ବରଂ ଭଲ । (ଆସିଛି ଅମର)

ଅମର--Oh ! it is too late, ମଉସା ! ଆପଣ ଏତେ ଦରଳ
 ହୋଇ ପୋଲିସ ଗୃକରୀ କେମିତି କରିଥିଲେ ?

ସୋମ—କାହିଁକି ?

ଅମର—ଗୋଟେ Dramaକୁ ଏତେ ସହଜରେ ବିଶ୍ୱାସ କରିଗଲେ ?

ଶିଶିର—(ଆଶ୍ଚର୍ଯ୍ୟରେ) Drama ! (ଲତା ଘର ଭିତରକୁ ଯାଉଥିଲା)

ଅମର—ଯାହାକୁ Compose କରିଥିଲେ ମୋର ଜଣେ
 ଆପଣାର………

ସୋମ—ଅମର ! !

ଅମର—ମଉସା ! ପୋଲିସ ଗୃକରୀ ପାଇଁ ଯାଉଛୁ ଯେ Modern
 Invastigationର ଅଜବ କାଇଦାଟା ଠିକ୍ ଢକମ

understand କରି ନ ପାରିଲେ, ଶେଷରେ ଆପଣଙ୍କ ସନ୍ତା ଧରିବାକୁ ପଡ଼ିବ ।

ଶିଶିର—ଅମର ! ତୁ କ'ଣ କହିବାକୁ ଚାହୁଁ ଯେ ଲତା ମୁଦ ଚୋରି କରିନି ?

ଅମର—Correct ଏକଦମ Cent Percent

ପାର୍ବତୀ—ତେବେ ଏମିତି କାହିଁକି ହେଲା ?

ସୋମ—ସବୁ ଦୋଷ ମୋ ଭାଗ୍ୟର, ଲତା ! ଲତା ! (ଏଣେ ତେଣେ ଖୋଜିଲେ) ପିଲାଟାକୁ କେତେ ପିଟିଲି, ଖାଇନି ବରୁଷ, ଲତା ! ଲତା ! (ଖୋଜ ଖୋଜ ଭିତରକୁ ଗଲେ)

ଶିଶିର—ଏସବୁ ଫାଶର ଉଦ୍ଦେଶ୍ୟ ମୁଁ କିଛି ବୁଝି ପାରୁନି ।

ଅମର—ଅପେକ୍ଷା କର, ଲତାକୁ କଏ, କାହିଁକି, କେତେବେଳେ ଏ ମୁଦ ଦେଇଥିଲା, ତାର ବସ୍ତୁତ ଖବରଣୀ ମୁଁ ତୋତେ ଦେବି, ସେଥିରୁ ତୁ ସ୍ପଷ୍ଟ ବୁଝିପାରିବୁ ଅସଲ ଉଦ୍ଦେଶ୍ୟ କ'ଣ ?

(ଏହି ସମୟରେ ସୋମନାଥ ବ୍ୟସ୍ତ ହୋଇ ଅସିଲେ)

ସୋମ—ଆରେ, ଶିଶିର ! ଶୀଘ୍ର ଆସ, ଲତାର କ'ଣ ହୋଇଗଲା

ଅମର, ଶିଶିର—କ'ଣ ହେଲା ?

ସୋମ—କେଜାଣି, ସେ ଶୁଣୁନି ଅମର, ବାପ ଶୀଘ୍ର ଦେଖ କ'ଣ ହେଲା ?

ପାର୍ବତୀ—ଲତା ! ତୋର କ'ଣ ହେଲା ? (ସମସ୍ତେ ବ୍ୟସ୍ତ ହୋଇ ଭିତରକୁ ଚାଲିଗଲେ, ପାର୍ବତୀ ମଧ୍ୟ ଯାଉଥିଲେ ହଠାତ୍ କାନ୍ଥ ଦେହରେ ବାଡେଇ ହୋଇ ପଡ଼ିଗଲେ, ସ୍ଟେଜଆଡ଼େ ଅନ୍ଧାର)

## ॥ ଚତୁର୍ଥ ଦୃଶ୍ୟ ॥

ପୂର୍ବର ସେହି ରାସ୍ତା । ମହୁରୀ ୫୦ ବର୍ଷର ବୁଢ଼ା, ମହୁରୀ ଶବ୍ଦରେ ସେ କାଳ । ମନ ଖୁସିରେ ସେ ଘରକୁ ଫେରୁଛି । ଗଞ୍ଜେଇ ନିଶାରେ ଗାଉଛି ଗୀତଟି, ବିକୃତ ସ୍ୱରରେ—

ମହୁରୀ—

ଦେଖ ଭାଇ କି ଯୁଗ ହେଲା
କୁଇନ୍ ମେରେଜ ଲଭ ମେରେଜ
ଦୁନିଆ ସାରକୁ ବାଇଆ କଲା ।

(ବାହାରୁ ଡ଼ାକ ଡ଼ାକ ଆସିଛି ଶଙ୍କର, ମହୁରୀର ସାଙ୍ଗ, ଢ଼ୋଲ ବଜାଏ)

ଶଙ୍କର—ମହୁରୀ, ଆରେ ହେ ମହୁରୀ (ମହୁରୀକୁ ହଲେଇ ଦେଉଛି)

ମହୁରୀ—(ହସି) କିଏ ? ଶଙ୍କର କି ? କ'ଣ.........ବଇନା ଅଛି ?

ଶଙ୍କର ହେଃ ହେଃ ମାଧାଟା ଟିକିଏ ବଢି ଯାଇଛି କି ?

ମହୁରୀ - ଯାଉର ? କୋଉଠି ?

ଶଙ୍କର (ବିରକ୍ତିରେ) ତୁମ ଘରେ ।

ମହୁରୀ—ଅଁ ! ବେ ଟିକିଏ ଜୋରକି କହ, ଏ ଦଶାଦିଆ ମହୁରୀ ମୋ କାନଟାକୁ ଆଜି ଉଣିଛି ନା ? ସମାନେ ଫଟେଇ ଦେଇଛି ପରା ।

ଶଙ୍କର—ଆଉ ସେ ମହୁରୀ ବାଜିବ ନାହିଁ ।

ମହୁରୀ—ଏଁ.........! (ଶୁଣି ନ ପାରି କାନ ଡେରି)

ଶଙ୍କର—(ଠାରି) ଏ ଯୁଗରେ ତୋ ମହୁରୀ ଚାଲିବନି ।

ମହୁରୀ—ହଁ, ହଁ ଯାହା କହିଲୁ ସତ, ଫଗୁଣ ମାସର ଆସି

ଆଠଣ ହେଲା, ମନ୍ଥର ମୋର ଅନୁକୂଳ ହ ହେଲାନି
ହଇରେ ଶଙ୍କର, ଏ ଟୋକାଗୁଡ଼ା କ'ଣ ବାହା ହଉନାହାଁନ୍ତି ?

ଶଙ୍କର—ହଁ, ହଁ ହେବେନି କାହିଁ ?

ମନ୍ଥର—କରେ କାହିଁ ? ଫଗୁଣ ମାସରେ ତ ଭାଲ ଘର ମୁଠେ
ମିଳୁଲାନି, ଆଉ କ'ଣ ଚଇତ ମାସରେ ମିଳିବ ?

ଶଙ୍କର—ନାଇଁ ନାଇଁ ଆମକୁ ଆଉ ମିଳିବନି ।

ମନ୍ଥର—ଆଁ ? ମିଳିବନି ?

ଶଙ୍କର—ନା, ଆଜକାଲି ଗୁଟେ କଣ କୁଉର୍ଟ ମେରେଜ ବାହାରିଛି ।

ମନ୍ଥର—ଆଁ......... ?

ଶଙ୍କର—କୁଉର୍ଟ ମେରେଜ କୁଉର୍ଟ ମେରେଜ ।

ମନ୍ଥର—କୁଉର୍ଟ ମେରେଜ ?

ଶଙ୍କର—ହଁ,

ମନ୍ଥର—ମୁଁ ତ ସେଇଆ ଶୁଣୁଛି, ହେ ଶଙ୍କର, ସେଟା କଣ ?

ଶଙ୍କର—ଖାଲି ଚୂପ୍ ଚୂପ୍ ବାହାଘର, ନେଇଁ ମନ୍ଥର, ଢୋଲ କଣ୍ଠି
ବାଜିବନି ।

ମନ୍ଥର—ଏଁ ! କଣ୍ଠି ବାଜିବନି ?

ଶଙ୍କର—ନା !

ମନ୍ଥର—ହେ ବାହାଘର ହବ କେମିତି ?

ଶଙ୍କର—ସିଏ ସବୁ କୁଉର୍ଟ ମେରେଜ ।

ମନ୍ଥର—ସେଟା କଣ ମିସିନ କବେ ?

ଶଙ୍କର—ହୋଇଥିବ ।

ମନ୍ଥର—ହଁ ହଁ, ବଳଦ ମିସିନ, ସେଥିରେ ତ ସବୁ ଅଛି । ହେ
ଶଙ୍କର ! ମୋ ପୁଅଟାତ ରହିଗଲା ।

ଶଙ୍କର—କାହିଁକି ?

ମନ୍ଦୁରା—ବେ ବାବାହକ କମିତ ?

ଶଙ୍କର—ଓ · ହ···ମୋ ଝିଅଟାତ ଭଡ଼ିଗଲା ।

ମନ୍ଥରା—(ଶୁଣିନପାରି) ଆଁ ······

ଶଙ୍କର - ମୋ ଝିଅ !

ମନ୍ଦୁରା—ତୋ ଝିଅ ?

ଶଙ୍କର – ହ,

ମନ୍ଦୁରା—ବେ ଶଙ୍କର ; ତୋ ଝିଅ···ମୋ ପୁଅ··· ?

ଶଙ୍କର--ମୋ ଢୋଲ ତୋ ମହୁରୀ, ( ଦୁହେଁଯାକ ଅନନ୍ଦରେ କୁଦୁକି ଉଠିଲେ ଏବଂ ପରସ୍ପରକୁ ସମୁଦି ବୋଲି ଡାକିଲେ )

ମନ୍ଦୁରା—ଏ ଫାଙ୍କା ଫଗୁଣଟାରେ ଥରେ ଢୋଲ ମହୁରୀ ବଜାଇ ଦେଇ ଏ ଗାଁଟାକୁ କମ୍ପାଇ ଦେବା ଚାଲ ।

ଶଙ୍କର—ଆମ ଢୋଲ ମହୁରୀ ବାଜିଲେ ନଈ ଆରପଟ ଫାଟି ଯିବ ପରା ।

ମନ୍ଦୁରା—ଠିକ୍ ଅଛୁ, ପରସ୍ତେ ଦେଖାଇଦେବା ।

ଶଙ୍କର—ଚାଲ ସମୁଦି ।

ମନ୍ଦୁରା—ଆଚ (ଦୁହେଁ ମନ ଖୁସିରେ ଚାଲିଗଲେ )

( ଅନ୍ଧାର )

## ॥ ପଞ୍ଚମ ଦୃଶ୍ୟ ॥

(ପୂର୍ବ ବର୍ଣ୍ଣିତ ସେହି ଘର, ଶିଶିର ହତାଶାରେ ଛିଡ଼ା ହୋଇଥାନ୍ତି ଓ ସୋମନାଥ ମଧ ସେମିତି ।

ଶିଶିର—ବୋଉ କ'ଣ ତେବେ ········ନିଖୋଜ ହୋଇଗଲା ?

ସୋମ—ଏତେ ଖୋଜିଲା ପରେ ତ କୌଣସି ଖବର ସୁଦ୍ଧା ମିଳୁନି ।

ଶିଶିର—ଆମକୁ ଛାଡ଼ି ବୋଉ କୁଆଡ଼େ ଚାଲି ? ଭୋକିଲା ପେଟ ଶୁଖିଲା ଆଖି ନେଇ ସେ କ'ଣ କରୁଛି ? କେମିତି ଗଲା ?

ସୋମ—ନିଜେ ତ ବଞ୍ଚି ପାରୁନି, ସାରା ବଂଶକୁ ବି ବଞ୍ଚେଇ ଦଉନି ।

ଶିଶିର—ତା'ର ଆଉ ଦୋଷ କ'ଣ ? ସରର ମୂରବୀ ହୋଇ ଘରକୁ ସଜେଇ ପାରୁନି ।

ସୋମ—ଗ୍ରେଟ ପିଲାଙ୍କୁ ଭୋକ କଲେ, ସେ କାନ୍ଦି ପାରନ୍ତି । ଦୁଇ ଦିନ ହେଲା ପିଲା ଦୁଇଟା ଟୋପାଏ ଲେଖାଏଁ ପାଣି ପିଇ ପଡ଼ିଛ । ମୋର କ'ଣ··· [ କାନ୍ଦି ପକେଇଲେ )

ଶିଶିର—ଆମର କ'ଣ କଷ୍ଟ କରିବାର ନାହିଁ ? ଆମ ପେଟ ପାଇଁ ତୁମେ କ'ଣ କଷ୍ଟ କରିପାରିବୁନି ? ଆମ ପାଇଁ କାହିଁକି ଏତେ ନିଜକୁ କଷ୍ଟ ଦେଉଛ ?

ସୋମ—ସେଡକରେ ବାପ ହେବାର ସ୍ୱାର୍ଥକତା ମିଳେ, ତଥାପି:····· ମୋ ଦେହର ଜୀବନରେ ତୁମମାନଙ୍କୁ କାଟ ଦେଖେଇ

ଖାଉନ, ମୁଢାଏ ତୋରାଣି ମୁଠାଏ ଶାଗ ମିଳିଥିଲେ···ତୋ ବୋଉ (ଲୁହ) ।

ଶିଶିର—ଏ ଗାଁର ଅନେକ ଲୋକଙ୍କ ଅବସ୍ଥା ଏମିତି, ଆମକୁ ଟିକଏ ବେଶୀ ବାଧୁଛି । ଅନେକ ସୁଖ ପରେ ସାମାନ୍ୟ ଦୁଃଖଟା ସହ୍ୟ ହୁଏନ, ଅଭ୍ୟାସରେ ପଡିଗଲେ ଦେହ ସୁଦ୍ଧା ହୋଇଯିବ ଯେ ।

ସୋମ—ସେତେବେଳକୁ ଦେହଟା ବରଫ ପାଲଟି ଯାଇଥିବ ।

ଶିଶିର—ହେଲେ ହବ ଆଉ କ'ଣ କରିବା ? ଗୃହଆଡ଼େ ତ ଗୋଟେ କଥା "କାମ ନାହିଁ" ବେକାର ସମସ୍ୟାର ବିକଟାଳ ରୂପ, ଘରେ ତ କଣା ଫଟା ପାମ ବି ନାହିଁ । ଚୋରୀ କରି ଖାଇବାକୁ, ଦୋକାନ ବଜାର ସବୁଙ୍କ ଫାଟକ ବନ୍ଦ ।

ସୋମ- ନା ନା, ତୋତେ କଷ୍ଟ କରିବାକୁ କହୁନ ।

ଶିଶିର—ନାଇଁ, ମୁଁ ଆଜି ଗୋଟେ ରିକ୍ସା ବନ୍ଦୋବସ୍ତ କରି ଆସିଛି । ଭାବୁଛି କାଲିଠାରୁ ରିକ୍ସା ଟାଣିବି । ଦେହରେ ତ ଯୁବକର ବଳ ଅଛି । କମ୍ ସେ କମ୍ ଘରକୁ ତ ମୁଠେ ଚାଉଳ ଆସିପାରିବ ।

ସୋମ—ବାସ୍, ବାସ୍ । ବହୁତ ହୋଇଗଲା ତୋତେ ଯେଉଁ ଆଶା ନେଇ B. A. ପଢ଼େଇଥିଲି ତୁ ରିକ୍ସା ଟାଣି ତାହା ପୂରଣ କରିବୁ ।

ଶିଶିର—ବାପା ! ମୁଁ ଆଉ କ'ଣ କରିପାରିବି ? ହଡ଼ାଏ ସାର୍ଟି-ଫିକେଟ୍ ଧରି ମୁଁ କ'ଣ କରିପାରିବି ?

ସୋମ—ତା ବୋଲି ମୁଁ ଦେଖେ ଯେଉଁ ବଦମାସ ଗୁଣ୍ଡାଗୁଡାକୁ ଛକ ବାଡ଼ରେ ନଚାଉଥିଲି, ତୁ ତାଙ୍କରି ଦଳରେ ମିଶି ମଦ ପିଇବୁ,

ଯୁଆ ଖେଳିବୁ, ଗ୍ରୁପାଗିରି କରିବୁ ?

ଶିଶିର—ମୁଁ ତ ସେକଥା କହୁନ, Gradu tionର ମାନଚିକଟା ଓ ଯୁବକଙ୍କର ବଳ ନେଇ ମୁଁ ରିକ୍ସା ଟାଣିବ ।

ସୋମ—(ରାଗରେ) ନା ! ମୋ ବଂଶର ସ୍ମୃତି ଉପରେ ତୁ ରିକସା ଚଲେଇ ଗ୍ଲାଲବୁ, ମୁଁ ଘରବରେ ସହିପିବ ? ନା, ନା, ନା ।

ଶିଶିର—ବାପା ! ମୋ ଭଳି ଯୁବକଙ୍କ ସ୍ମୃତି ଉପରେ ମା' ଭିକ ମାଗିବ, ବୁଢ଼ା...ବାପା ପାଗ୍ ଧଣବାରେ ବୋଝ ମୁଣ୍ଡେଇ ଅନ୍ୟର ଧକ୍କା ସହିବ · ଭଉଣୀ ପର ଆଖିରେ ଶିକାର ହେବ, ଆଉ...ମୁଁ ଘରବରେ ବସି ଏ ଫାର୍ଟ ପି ଜେନ୍ ଗୁଡ଼ାକୁ ଧରି ତପସ୍ୟା କରିବି... ? ନା, ଅସମ୍ଭବ !!

ସୋମ—ତଥାପି ମୁଁ ତୋତେ ଗ୍ଲାଡ଼ିବନ ।

ଶିଶିର—ନିଶ୍ଚୟ ପିବ...ମୁଁ ରିକ୍ସା ଟାଣିବ, ପେଲ୍ଟ ଧୋଇବ, ବୋଝ ବହିବ, ହଳ କରିବ ।

ସୋମ—(ଧୈର୍ଯ୍ୟ ଧରି ପାରିଲେନ, ଶିଶିର ଗାଲରେ ଗ୍ରପ୍ପଡ଼ାଏ ମାରିଲେ) ଚୁପ୍ କର ! ଅବାଧ ! ଯା ! ଚୁଲିଯା ! (ଠିକ୍ ଏହି ସମୟରେ ଆସିଛି ଲତା )

ଲତା—(ଆଶ୍ଚର୍ଯ୍ୟରେ) ବାପା ! ! (ସୋମନାଥ ଲତାକୁ ଦେଖି ନିଜର ଦୁର୍ବଳତାକୁ ବୁଝି ପାରି ଲୁହଭରା ଆଖିରେ ଥରେ ତାଙ୍କର ଥରିଲା ଥରିଲା ହାତକୁ, ଥରେ ଶିଶିରର ଅଭିମାନ ଭରା ମୁହଁକୁ ଆଉ ଥରେ ବିସ୍ମିତା ଲତାକୁ ଚାହିଁଲେ, କଥାର ଓଜନ କମେଇବାକୁ ଚେଷ୍ଟା କଲେ । )

ସୋମ– ଅରେ ମା ! ଦେଖ୍ ଦେଖ୍ ଶୁଣ୍ ତୋ ଭାଇ କହୁଛି ଲକପା ଟାଣି ମୋତେ ଛୋଡ଼ିବ । ଗୁଳପାଟା ଦେଇ ଦେଇଛି ବୋଲି ଏ ବଦବସ୍ତ ଖାକୀ ଚମଡ଼ା ତ'ଣ ତାହା ସହି ପାରିବ ?

ଲତା– ( ଉଚ୍ଚସ୍ୱରେ ହୋଇ ) ଭାଇ !

ସୋମ–ସେଟା ଅବୁଝା ହୋଇଗଲାଣି ମା ! ତୁ ତାକୁ ଟିକିଏ ବୁଝେଇଦେ !

ଶିଶିର–ହଁ ( ସୋମନାଥ ଅଟକ ଭଳେ ) ଆଜ ସେଇଥିପାଇଁ ମୁଁ ଆଜ ଅବାଧ ହୋଇଯିବାକୁ ବାଧ ହେଉଛି । ... ଅଯଥା ଆଭିଜାତ୍ୟର ଅଳ ଅହଂକାରକୁ ଜାବୁଡ଼ି ଧରି ଆମେ ଆଜ ହା' ଅନ୍ନର ଚିତ୍କାର କରୁଛୁ କାହିଁକି ? ସ୍ୱା'ର ଉତ୍ତର ଦେବ କିଏ ?

ଲତା–ଭାଇ ! ତମେ ଲକ୍ପା ଟାଣିଲେ ବାପାଙ୍କ ସମ୍ମାନ ହିଁରବ ଯୋଡ଼ ଯିବନ ?

ଶିଶିର–ପେଟର ନିଆଁରେ ସବୁ ଯୋଡ଼ଯାଏ ଲତା ! ଆଉ ସେଇ ନିଆଁକୁ ଲିଭେଇ ଦେବାପାଇଁ ମଣିଷ ତା'ର ସର୍ବସ୍ୱକୁ ବ ଯୋଡ଼ଦେଇ ପାରେ ! ( ଦ୍ରୁତବେଗରେ ଚାଲିଗଲେ )

ଲତା–ଭାଇ ! ( ପଛରେ ଯାଉଥିଲା )

ସୋମ–ତାକୁ ଯିବାକୁ ଦେ, ମା ! ବାଘର ନାଲି ଆଖି ନେଇ ମୁଁ ତାକୁ ଅଟକାଇ ପାରିବନି···ବାସ୍ତବିକ, ପେଟର ନିଆଁରେ ମୋର ସର୍ବସ୍ୱ ଯୋଡ଼ଯାଇଛି···ଓଃ ··ମୁଁ ତେ

ଘାତ ବଦଳରେ ପୁଅ ଗାଲରେ ଚ୍ଛପୁଡ଼ା ମାର · ଓଃ···
( କଷ୍ଟ ଅନୁଭବ କର ` ଲତା · ପାଣି···

ଲତା–ବାପା ! କଣହେଲା ? କ'ଣ··· ( ବ୍ୟସ୍ତରେ ପାଣି ଆଣି, ସୋମନାଥଙ୍କୁ ଦେଲା ) ବାପା ! ତମେ ପର ଘୁଚିକୁ ଝାଣ ନକର, ଆମେ ଆଉ କାହା ଉପରେ ନାଚବା ?

ସୋମ–ଏ ପଙ୍ଖା ଘୁଚିରେ·· ମୁଁ ଆଉ ପାରୁନ··· ( କାନ୍ଦ )

ଲତା–( ବ୍ୟସ୍ତରେ ) ଖାଲି ପେଟ · ପାଣି ଗୁଡ଼ାକୁ ରଖି ପାରିଲାନ । ଅପେକ୍ଷା କର ବାପା ! ମୁଁ କୋଉଠୁ କିଛି···

ସୋମ–କେଉଠୁ କ'ଣ ପାଇବୁ ?

ଲତା–ମୁଁ ଦେଖେ··· ( ବ୍ୟସ୍ତରେ ଚାଲିଗଲା )

ସୋମ–( ଘର୍ଘର ଶ୍ୱାସରେ ) ହେ ପ୍ରଭୁ ! ମୋ ଜୀବନରୁ କ'ଣ ଅନ୍ଧାର ଦୂର ହେବନ ? ସାରାଜୀବନ ବୈଶାଖର ମଧ୍ୟାହ୍ନରେ ଶୋଷାଲୁର କୁଆପରି ଖାଲି ଆକାଶରୁ ପୃଥିବୀଯାଏ ଦୂର ବୁଲୁଥିବ ମୁଠା ମୁଠା ହତାଶ · ଗଦା ଗଦା ନୈରାଶ ଆଉ ଗୁଞ୍ଜି ପୁଞ୍ଜି ନରୁପାୟର ନଆଁ ଗୁଡ଼ାକ ପଛରେ ରହି ହସୁଥିବେ । ( ଘାବଲେ, ମନେ ପଡ଼ଲା ଶିଶିର କଥା )

ଶିଶିର–( Voice ) ପେଟର ନଆଁରେ ସବୁ ପୋଡ଼ିଯାଏ, ଆଉ ସେହି ନଆଁକୁ ଲିଭେଇ ଦେବା ପାଇଁ ମଣିଷ ତା'ର ସର୍ବସ୍ୱକୁ ବି ପୋଡ଼ି ଦେଇପାରେ ।

(ବାରମ୍ବାର Voiceରେ ବିବ୍ରତ ହେଲେ ସୋମନାଥ, ନଜକୁ ଲୁଚିଲେ ଘୃଣାର ଆଖିରେ, 'ମନ'ର Voice )

ମନ—( Voice ) ଭାବୁଛ କି ? ସିଂହ ହୋଇ ଶୃଗାଳର ଚମଡ଼ା ତଳେ ଲୁଚି ଯାଉଛୁ ? ପୋଲିସ ରକ୍ତକୁ ଶିରରେ ରଖି ଖୁରୁଙ୍କ ଭଳି ଭିକ ମାଗୁଛୁ ? ଯା, ମାର୍, ଜୁଲମ କର, ନହେଲେ ଲୁଟ୍ କର, ବେଶିହେଲେ ଖୁନ୍ କର । ଶହଶହ ଗୋଦାମ୍‌ରେ ହଜାର ହଜାର ବସ୍ତା ଚାଉଳ ମୁଣ୍ଡା ଲୁଟି ନେଉଛନ୍ତି । ଅଥଚ, ତୁ, ତୋର ବଂଶ ଭାତ ମୁଠାଏ ପାଇଁ ଚିତ୍କାର କରୁଛ ? ଯା ତାଲା ଭାଙ୍ଗ୍ । ବସ୍ତାପରେ ବସ୍ତା ଲୁଟ କର ! ବାଧା ପାଇଲେ ଖୁନ୍ କର ! ତୋ ପାଇଁ, ତୋ ବଂଶ ପାଇଁ ଚେଷ୍ଟାକର ! ତାଲା ଭାଙ୍ଗ ! ପକେଟ୍ ମାର୍ ! ଖୁନ୍ କର୍ !

( ମନର ବାରମ୍ବାର ପ୍ରେରଣାରେ ବିଚଳିତ ହୋଇ ଉଠିଲେ ସୋମନାଥ ଏହି ପରି Voice ଭିତରେ ହଠାତ୍ ବିପରୀତ ଦିଗରୁ ଚିତ୍କାର କରି ଉଠିଲା ସୋମନାଥର ବିବେକ )

ବିବେକ—(Voice) ନା, ଯେଉଁ ହାତ ଆଇନ୍‌ର ମର୍ଯ୍ୟାଦା ରକ୍ଷା କରିବା ପାଇଁ ସାରା ଜୀବନ ଯୁଦ୍ଧ କରି ଆସିଲା, ସେହି ହାତ ପୁଣି ଯିବ ଆଇନ୍‌ର ତଣ୍ଟି ଚିପିବାକୁ ? ନା, ଶୁଖି ଶୁଖି ବରଂ ମାଟିରେ ମିଶିଯା ! କାଗଜ ଘର ଉପରେ ଛିଡ଼ା ହୋଇ ଆକାଶକୁ ଛୁଇଁବାର ଚେଷ୍ଟା କରନା ! ଦିନେ ଆକାଶକୁ ଅମାବାସ୍ୟା ଆସିବ, ମେଘ ଘୋଟିବ, ତୋଫାନ ଉଠିବ, ସେଦିନ ନଷ୍ଟସ୍ତୂପ ମାଟି କାମୁଡ଼ି ପଡ଼ିବୁ !

ସୋମନାଥ—( ଭାବନାରେ ଦୃଢ଼ ) ନଷ୍ଟସ୍ତୂପ ଲଦୁଖାଇ ଲୁହପିଇ ବଂଚିବ, ଆଇନ୍‌ର ଜଗୁଆଳି ହୋଇ ଆଇନକୁ ଖୁନ୍ କରି ପାରିବନି ! ! (ନୀରବରେ) ·· ତଥାପି ···

ଶିଶିର—(Voice) ପେଟର ନିଆଁରେ ସବୁ ପୋଡ଼ିଯାଏ, ଆଜ ସେଇ ନିଆଁକୁ ଲିଭେଇ ଦେବାପାଇଁ ମଣିଷଟା'ର ସର୍ବସ୍ୱକୁ ବି ପୋଡ଼ି ଦେବାପରେ ।

(ବାରମ୍ବାର Voice ସୋମନାଥଙ୍କୁ ବ୍ୟସ୍ତ ବିବ୍ରତ କରି ପକେଇଲା ଏବଂ ଶେଷରେ ତାଙ୍କୁ ଘରୁ ବାହାରକୁ ତଡ଼ି ନେଇଗଲା କିଛି ସମୟ ପରେ ଆସିଛି ଲତା ହାତଧରି କିଛି ନେଇ -'ବାପା'' 'ବାପା' ଡ଼ାକିଛି ଖୋଜିଛି—ଘରର ଏପଟ ସେପଟ, କିନ୍ତୁ ନିରୁଣ । ସ୍ୱରଆଡ଼କୁ ଅସହାୟ ଭାବରେ ଗୁହିଁଛି, ଲୁହ, ଆଖି ଉପରକୁ ଉଠି ଆସିଛି, ଚତୁର୍ଦ୍ଦିଗକୁ ଅନ୍ଧାର କରି )



## ॥ ଷଷ୍ଠ ଦୃଶ୍ୟ ॥

ପ୍ରଶସ୍ତ ରାସ୍ତା । ଅନତି ଦୂରରେ ବସ୍‌ଷ୍ଟାଣ୍ଡ୍ । ମୋଟର ଗାଡ଼ିର ପେଁ ପାଁ ଶବ୍ଦ । ବୁଲା ବିକାଳୀଙ୍କ କର୍ଣ୍ଣଫଟା ଚିତ୍କାର ଟ୍ରାଫିକ୍ ପୋଲିସର ହୁଇସିଲ୍, ଭିକାରୀମାନଙ୍କ ହା' ଅନ୍ନ ଚିତ୍କାର, ପରିବେଶଟିକୁ ଜୀବନ ସଂଗ୍ରାମର କୁରୁକ୍ଷେତ୍ର କରି ପକେଇଥାଏ । ବୈଶାଖର ମଧ୍ୟାହ୍ନ ସାରା ଆକାଶରେ ନିଆଁ ଜଳୁଥାଏ । ମୁଣ୍ଡ ଉପରର ନିଆଁ ଓ ପେଟ ଭିତରର ନିଆଁରେ ଦେହଟାକୁ ସିଝେଇ ସିଝେଇ ବାହାରି ଆସିଲେ ସୋମନାଥ । ମୁଣ୍ଡ ଉପରେ ଯାତ୍ରୀଙ୍କ ବୋଝ ହାତରେ

ବ୍ୟାଗ୍ ଦେଇ ମୁଁହଁରୁ ଝାଳର ସୁଅ ଛୁଟୁଥାଏ । ଆଉହାତରେ ଝାଳ ପୋଛୁଦେଇ ବସ୍‌ଷ୍ଟାଣ୍ଡକୁ ଚାଲିଗଲେ ପଛରେ ଆଗରେ କେତେ ଜଣ ଯାତ୍ରୀବି ଗଲେ । ଏହି ସମୟରେ ଆସିଲା ଶଙ୍କର ହାତରେ ମୁଢ଼ି ଟିଣ, ସେ ବର୍ତ୍ତମାନ ମୁଢିବାଲା । ବସ୍‌ଷ୍ଟାଣ୍ଡରେ ତା'ର ନାମ ଅଛି । ପୁଣି ବ୍ୟବସାୟିକ ଢ଼ାଞ୍ଚା—

ଶଙ୍କର – ମସଲା ମୁଢ଼ି ! ବାଦାମ୍ ନଡ଼ିଆ, ଚେନାଚୁର ମିଶା ଗରମ ମୁଢ଼ି, ମୁଢ଼ି ଦେବ ଆଜ୍ଞା ! (ଏଣେ ତେଣେ ଲୋକ ଦେଖି ଡାକୁଥାଏ, କିନ୍ତୁ ବିକ୍ରୀ ନାହିଁ, ଶେଷରେ ବିରକ୍ତିରେ) ଏ ଖରା ଦିନରେ ଗରମ ମୁଢ଼ିକୁ ପଚାରୁଛି କିଏ ?

( ଫେରିଯାଉଥିଲା, ହଠାତ୍ ସାମନାରେ ଅମର )

ଅମର—କିଏ ? ଶଙ୍କରକି ? କିରେ ! ଢ଼ୋଲଗୁଣ୍ଡି ଏ ଟିଣ ପ୍ରେମ କେବେଠୁ ?

ଶଙ୍କର—କଣ ଆଉ କରିବା ? ତମ ଭଳିଆ ଟୋକା ଗୁଡ଼ାତ ବାବୁ ହେଲେନି, ଯଦି ବା ହେଲେ ମହରରେ କ କୁଳେଟ୍‌ରେ, ଆମ ଢ଼ୋଲକୁ ଆଉ ପଚାରୁଛି କିଏ ?

ଅମର ହଉ ହେ, ଦେ, ଦ' ଗଣ୍ଡା ପଇସାର ମୁଢ଼ି ଦେ !

ଶଙ୍କର—କାହିଁକି, ଖାଇଁବାର ନାହିଁ ? ପାଣି ଗିଲାସେ ପିଇଦେ ।

ଅମର—କିରେ ! ପଇସା ପିତା ଲାଗୁଛି କି ?

ଶଙ୍କର—ତୁ ତ ନଯାଉ ପଇସା ଦେଇ ପକାଉଚୁ ? କିସନା ସୁଆଦ ଖୋଜୁଛୁ ? ଯାପା, ଖରାବେଳେ ଶୁଖିଲା ମୁଢ଼ି ଖା' ନା

ଅମର—କିରେ ଶଙ୍କର ଟାଉନରେ ରହି ବେଶ୍ ଲମ୍ବା ଲମ୍ବା କଥା କହିଲୁଣିତ ? ହଉ, ଦେ ଦଶପଇସାର !

ଶଙ୍କର—( ହେଉ ଦେଇ ) ପକେଟରେ ପଇସା ଅଛିନା ?

ଅମର—ନେଲ୍‌କେଲେ ଦେଖିବୁନ !

ଶଙ୍କର—( ଦେଲ ) ଗରମ ମୁଢ଼ି, ମସଲ୍ଲଦଆ ମଜାଦାର
ଗରମ ମୁଢ଼ି !

ଅମର—( ପାଣିରେ ପକଉ ପକଉ ) ଚୁପ୍ କେ, କାହିଁକ ଚିଲଉଛୁ ? (ଆସିଛନ୍ତି ସୁବୋଧ ) Hallow ସୁବୋଧ, କବେ ! ଆ, ମୁଢ଼ି ଖା । ଶଙ୍କର ! ଦେଇଚକା ବାବୁଙ୍କୁ, ଟିକଏ ବାଦାମ୍ ଭଜଆ ଦେଇ ସ୍ପେସ୍ତ୍ ବନେଇକେ

ଶଙ୍କର—(ପଇସା ବଖସ୍ବରେ ସଦେହ କର ଏଣେତେଣେ ଖୁନ୍ଦୁଁ ଅ ଏ)

ସୁବୋଧ—ନା ନା, ଆଜ ମୋର ବସ୍ ଛୁଡ଼ିଦେବ ।

ଅମର—ଗ୍ଥହିଁକୁ କଣ ବେ ! ଦେ ଶୀଘ୍ର !

ସୁବୋଧ--ଅମର, ଗୋଟେ କଥା ଥିଲ-

ଅମର--( ମୁଢ଼ି ଶଙ୍କରଠୁ ନେଇ ଦେଲ ) କଣେ ତୁ ଆଗ ପକେଇଦେ, ପାଟିକୁ ?

ସୁବୋଧ--ତୁ ତ ଜାଣୁ ବାଣ୍ଡା ଘଇ ମୋତେ ଗାଁକୁ ଗ୍ଥଡୁ ନାହାନ୍ତି ଏମିତକ ଚଠି ଖଣ୍ଡେବ...

ଅମର—ତୁ ବ୍ୟସ୍ତ ହ'ନା, ଆମେ ସବୁ engage ହୋଇ ଗିବାପରେ All will be allright.

ସୁବୋଧ--engage ? ମାନେ service ?

ଅମର--Yes. ଆଜ ଚବ interview, ଶିଖିଲଣା ଯେ ଭୁଆଡ୍ରେଗଲ—

ସୁବୋଧ--ଶିଖିର ? ମୁଁ ତ ତାଙ୍କୁ Blood Bankରେ ଦେଖି ଆସିଲି ।

ଅମର – Blood Bank ? ସେଠି କ'ଣ କରୁଛୁ ?

ଶଙ୍କର –ମେଡ଼େନ୍ତର ! ମୋତେ ଦେ ବାବା ମୁଁ ଯାଏଁ ?

ଅମର – ଚୁପରେ, କାହିଁକି ପାଟି କରୁଛୁ ?

ସୁବୋଧ–ଅମର ! ତୋର ସାହାଯ୍ୟରେ ଆମେ···

ଅମର–ଚିନ୍ତା କରିବାର କୌଣସି କାରଣ ନାହିଁ, ତୁ Lawଟା Complete କରିଦେ, କରୁ ନ କେଲେ Court Marriage.

ସୁବୋଧ –ଓ···( ହସିଲେ ) ଏହିତ ଶିଶିର ଆସୁଛି ( ବସ୍ ଛାଡ଼ିବାର ଶବ୍ଦ ) ଅମର ମୋ ବସ୍ ପ୍ରାୟ ଛାଡ଼ିଦେଲା, ମୁଁ ଆସେ, ଏ ଖଟି Kindly

ଅମର–( ଚଟିନେଇ ) କ'ଣ ? Secret··· ? (ସୁବୋଧ ହସିଦେଇ ଚାଲିଗଲେ )

ଶଙ୍କର–ମେଡ଼େନ୍ତର !

ଅମର–ଚୁପ୍‌ରେ, ଗୋଟେ ଜମେଇକ ପୁଡ଼ିଆ କର

( ଶିଶିର ଆସିଛି )

ଶଙ୍କର–ବେ, ଯାହା ଖାଇଛୁ ଆଗ ପଇସା ଦେଇସାର !

ଅମର–ପଇସା ନବୁଝ ଦେ ଗୋଟେ ପୁଡ଼ିଆ, କହେ ଶିଶିର ! କୁଆଡ଼େ ଥିଲୁ ?

ଶିଶିର–ନାଇଁ · ମାର୍କେଟିଂ ପାଇଁ ଆସିଥିଲି ।

ଅମର—ହଉ ନେ, ଏ ମସଲ ମୁଢ଼ି ପାଟିରେ ପକା ।

ଶିଶିର—ନା··,

ଅମର - ନେ ନେ ( ଶଙ୍କର ହାତରୁ ନେଇ ଶିଶିରକୁ ଦେଲା )

ଶଙ୍କର-ପଇସା··· ?

ଅମର–ତୁ ବସ୍‌ଷ୍ଟାଣ୍ଡରେ ଗୋଟେ ଚକ୍‌କର୍ ମାରିଆ, ମୁଁ ଦଉଛି

ଶଙ୍କର-ନା ତୁ ପଳେଇବୁ, ତୋତେ କୋଉଁଠି ଖୋଜିବ ? ତୁ ଦେଇ ପଳେଇଲୁ, ମୁଁ ମୋ ବାଟ ଧରେ ।

ଅମର-ନେ ଯା ! ଗାଳି କରନା

ଶଙ୍କର—ମୁଢ଼ି ଖାଇଲୁ ପଇସା ଦବୁ, ଏତେ କଥା କାହିଁକି ?
( ପଇସାନେଇ ଚାଲିଗଲା )

ଅମର—ଶିଶିର ! କଣ, ରକ୍ତ ଦେଲୁ ?

ଶିଶିର—( ହଠାତ୍ ଅପ୍ରସ୍ତୁତ ହୋଇ ନୀରବ )

ଅମର—କେତେ ଟଙ୍କା ପାଇଲୁ ?

ଶିଶିର—( ଛଳଛଳ ଆଖିରେ ) କଣ ଆଉ କରିଥାନ୍ତି ଅମର ! ଭରସା ଥାଳିବ ବୋଲି ଘରୁ ଚାଲି ଆସିଲି, କିନ୍ତୁ ଏ ସମାଜରେ ମୋ ପାଇଁ ଭରସା ନାହିଁ । ମାଲିକମାନେ ମୋତେ ଦେଖି କବାଟ ବନ୍ଦ କରିଦେଲେ, ଭଦ୍ରଲୋକ ମାନେ ମୋ ସାର୍ଟିଫିକେଟ ଦେଖି ପାଗଳା ବୋଲି ଥଟ୍ଟା କଲେ । ଆଉ ମୁଁ କ'ଣ କରିବ । ଶେଷରେ Blood Bankରେ କିଛି ରକ୍ତ ଦେଇ ମୁଠେ ଚାଉଳ ଧରି ଘରକୁ ଫେରୁଛି ।

ଅମର – ଛି ! ଶିଶିର ଦୁଃଖ କରନା, ମଣିଷ ପାଇଁ କେବେ କେବେ ଏମିତ ପରିସ୍ଥିତି ପଡ଼ନ୍ତେ, ତା'ର ଯଥାର୍ଥ ମୁକାବିଲା ପାଇଁ ଧୈର୍ଯ୍ୟ ଦରକାର । ଚାଲ, ଚାଲ, interviewଟା ଦେଇ ଆସିବା ।

ଶିଶିର—ଜୀବନରେ ଆଉ କେତେ interview ଦେବ ?

ଅମର—ଏଇଠି କିନ୍ତୁ ମୋର ବ୍ୟାକ୍ ଅଛି ।

ଶିଶିର—ତୋର ସିନା ବ୍ୟାକ୍ ଅଛି, ମୁଁ ?

ଅମର-ମୁଁ ତୋ ପାଇଁ ବ୍ୟାଙ୍କ, Head Clerk ହେଉ ମୋର Father in law ହେବାକୁ ଯାଉଛି । ଅରେ, ଗ୍ରକଷପାଇଁ ଯେଉଁଠି ଯାହା ମିଳୁଛି ମିଳୁ, ଆ ଚେଷ୍ଟା କରିବା, ଦେଖିବା, ତା'ର Second Daughter ଅଛନ୍ତି କ !

ଶିଶିର-ତୋର ଖୁସି ! ( ଗ୍ଳଲଯାଉଥିଲେ, ପୁଣି ଆସିଛି ଶଙ୍କର)

ଶଙ୍କର-କରେ ଆଜ ମୁଁଡ଼ି ନବୁକ ?

ଅମର-ଏଁ ! ହଉ, ଦେ, ଆଉ ଦ'ଟା ପୂଡ଼ଆ ।

ଶଙ୍କର—ମୁଁ ସବୁ ଜାଣେ ଏ ବୈଶାଖ ମାସରେ ତୋ ଭଲ ଟସ୍ୱଖ କେତେଜଣ, ନେ ମୁଁ ଅଗରୁ ତଆର କରି ରଖିଛି । ( ଅମର ନେଲ ) ଦେ, ମୋ ପଇସାଟା !

ଅମର—ବୁଢ଼ାଠୁ ନେଇଯିବୁ

ଶଙ୍କର—ଆରେ, ବାବା ଜୁହାର ଜୁହାର, ସେ ଦବନ. ଭୁଦେ ।

ଅମର—ମୋ ନାଁ କହି ବୁଢ଼ାଠୁ ଆଦାୟ କରିବୁ ( ଚ୍ଲଲଗଲେ)

ଶଙ୍କର—ନା ନା ସେ ଦବନ, ମେହେନ୍ତର ! ଏ ମେହେନ୍ତର

ଅମର—( ବାହାରୁ ) ଚୁପ୍ ! ବଜାରଟାରେ ଏମିତି ଡ଼ାକନା

ଶଙ୍କର—( ହତାଶହୋଇ ) ଭାଣ୍ଡିକ ଯେ ଦେଲ, ଗଲ ପନ୍ଦର ପଇସା ।

ମହୁଷା—( ଆସିଛି ଟିକଏ ଉନ୍ନତ ବେଶରେ ) କହେ, ସମୁଦି ! ଜୁହାର

ଶଙ୍କର—ଏଁ ! ସମୁଦି ! ଜୁହାର, ଏ ଉସ୍ତବେଳଟାରେ ନଗର ପସର ହୋଇ କୁଆଡ଼େ ଧାଇଁଛ ?

ମହୁଷା—( ଉପର୍‌କୁ ଗ୍ଳହିଁ ) ମେଘ ? ଏ ଭାଗ ରଇଜରୁ ନେଇ

ଗୁଡ଼ଗଲ ସମୁଦ୍ର ! ବର, ଆମ୍ବଗୁଡ଼ା ପର ଠିଆ ଠିଆ ଜଳଗଲେଣି !

ଶଙ୍କର–( ହସି ) ବୁଢ଼ାଲୋକ, ଏ ଖଣ୍ଡଟାରେ–

ମନ୍ଥର–ଚୂଡ଼ା ? ହଁ ହଁ ଆଣିଛୁ । ତମର ମୁଡ଼ିକୁ ମୋର ଚୂଡ଼ା

ଶଙ୍କର–( ଏରକ୍ତରେ ) ଗୁଲ କୀର୍ତ୍ତନ କରିବା । ( ଜୋର ) ମୁଡ଼ି ମୁଠେ ଖାଅ !

ମନ୍ଥର–ଏଁ ! ଚଢ଼ ? ଅଛୁ ନବନା ନଅ ! (ବଢ଼ ବାହାର କଲ)

ଶଙ୍କର–( ମୁଡ଼ି ଦେଖାଇ ) ମୁଡ଼ି, ମୁଡ଼ି ମୁଠେ ପାଟିରେ ପକାଅ ।

ମନ୍ଥର– ହସି ) ନ ନା, ଥାଉ, ଦାନ୍ତଗୁଡ଼ା ସବୁ ହୁଗୁଳାଖଣ୍ଡ ପର ଏପଟ ସେପଟ ହେଲେଣି, ଗୁଲ ବରଂ ହୁଟେଲ ଯିବା ।

ଶଙ୍କର–ବୁଢ଼ାର ତ ଝାଗ ମନ, ହଉ ଗୁଲ

ମନ୍ଥର–ସମୁଦ୍ର ! ସମ୍ବଲପୁର ମିଳବନା ?

ଶଙ୍କର–ଗଞ୍ଜେଇତ ?

ମନ୍ଥର–ତମେ ନ ଖାଇଲେ ମନଟା ଖଟା ହୋଇ ଯାଉଛି ।

ଶଙ୍କର–ଆସ, ମନଟାକୁ ଟିକଏ ହାଲୁକା କରିଦେବା ।

( ଦୁହେଁ ହସି ହସି ଗ୍ଲ୍ବଗଲେ, ପଛରେ ବନ୍ଧା ଯାଇଥିବା ରୁଟି କଚୁ ନେଇ ସୋମନାଥ ଆସିଛନ୍ତି । ଖଣ୍ଡିଏ ରୁଟି ବାହାର କରି ଦେଖିଛନ୍ତି, କେତେ କ'ଣ ଭାବୁଛନ୍ତି )

ସୋମ–ଏଇଭଳି କେତେ ରୁଟି ଏଇ ହାତରେ ଫୋପାଡ଼ ଦେଇଛୁ, ମାତ୍ର···ଆଜି ? ଗୁଡ଼, ( ଦୀର୍ଘଶ୍ବାସ ) ଯାହା- ହେଉ, ଏ ବୈଶାଖ ମଧ୍ୟାହ୍ନରେ ପାଣି ମୁନ୍ଦେ ମିଳୁ,

ଘରେ ପିଲାଟା · ଭୁଲିଥିବ । ଖେଳ କୋଣରେ···ମୋତେ ଖୋଜୁଥିବ···ଶିଶିର · ଠାକୁରଙ୍କ ମୁଠେ ଗ୍ରାଚ ଚିନ୍ତୁ···

( ଲୁହଭରା ଆଖିରେ ଖଣ୍ଡିଏ ରୁଟି ଫାଟିକୁ ନେଇଛନ୍ତି, ଆସିଛନ୍ତି ସାବଣୀ, ଭିକ୍ଷା କର କର, ଖବର ତାଙ୍କରେ ପାଦ ଟଳମଳ )

ସାବଣୀ–ବାବୁ ! ଖବରେ ତଣ୍ଡି ଶୁଖିଗଲା 'ବାବୁ' ଅଜ୍ଞକୁ କଣ୍ଟୁ ତଅ ବାବୁ ପାଣି ମୁଢଏ ପିଇବ · ଅଜ୍ଞକୁ ମୁଠେ ଦଅ ତମର ଧର୍ମ ହେବ !

( ସୋମନାଥ ସାବଣୀଙ୍କୁ ହଠାତ୍ ଦେଖି ଅଶ୍ଚର୍ଯ୍ୟ ହେଲେ ସତ, କିନ୍ତୁ ଧୈର୍ଯ୍ୟ ଧରି ପାରିଲେନି । ପାଟିର ରୁଟି ପାଟିରୁ ଖସି ପଡ଼ିଲା, ଲୁହ ଭରା ଆଖିରେ ସାବଣୀ ହାତରେ ରୁଟି ଖଣ୍ଡିଏ ପକେଇଲେ କିନ୍ତୁ ବାକ୍ପରୁଦ୍ଧ କଣ୍ଠରୁ କିଛି ବ ହାରିଲେନି )

ସାବଣୀ ( ରୁଟି ଖଣ୍ଡିଏ ପାଇ ଖୁବ୍ ଖୁସି ହେଲେ ) ଠାକୁରେ ତୁମର ମଙ୍ଗଳ କରନ୍ତୁ । (ଯାଉଥିଲେ କିନ୍ତୁ ପଛରେ ଛିଡ଼ା-ହୋଇ ହସୁଥିଲେ ମିଶ୍ର )

ସୋମ –( ହଠାତ୍ ପାଟିରୁ ବାହାରି ଗଲା) ସାବଣୀ ! (ସାବଣୀ ଅପ୍ରସ୍ତୁତ ଓ ଅଶ୍ଚର୍ଯ୍ୟ ହେଲେ । )

ମିଶ୍ର ( ତାଚ୍ଛଲ୍ୟ ) ଆ··ହା···ଧନ୍ୟ, ଧନ୍ୟ ଜମାଦାରେ, ତୁମ ଜୀବନ ଧନ୍ୟ ଏ ଦୁନିଆର ଆଖିବି ଧନ୍ୟ ହୋଇଗଲା । ତୁମକୁ କି ଲାଜ ଲାଗୁଡ଼ଗଲା · ? ଯେଉଁ ଛକରେ ଲାଠି କଚଡ଼ି ଶାସନ ଚଳାଉଥିଲ, ସେଇଠି ବସି ଭିକ ମାଗୁଛ ? ଘୃଣ··· ହେ ହେ··· ପ୍ରେମ କରୁଛ ? ହଠାତ୍ ରାସ୍ତା ଚୋ.ବାଟ, ଦେଖାଅ. ଏ ଭୁଲିଛକରେ ଆଉଥରେ କିଛି ଲୀଳା ଦେଖାଅ ?

(ମିଶ୍ର ଚାଲିଗଲେ ସାବଣୀ ଓ ସୋମନାଥ ପରସ୍ପର ନିର୍ବାକ୍, ଅନ୍ଧାର)

## ।। ସପ୍ତମ ଦୃଶ୍ୟ ।।

ବଂଶପାଟଣା ଗାଁର ଶ୍ମଶାନ । ଭୟଙ୍କର ଗମ୍ଭୀର ଗାମ୍ଭୀର୍ଯ୍ୟ ଭିତରେ ପେଚ୍ଛା ବିଲୁଆଙ୍କ ବିକଟାଳ ଶବ୍ଦ । ଅମାବାସ୍ୟାର ଘନ ଅନ୍ଧାର ଭିତରେ ଶ୍ମଶାନର ଉତ୍ତପ୍ତ ଅଙ୍ଗାର ମଶିଣ ମନରେ ମୃତ୍ୟୁର ସ୍ପନ୍ଦନ ସୃଷ୍ଟି କରୁଥାଏ ଜୁଇ ଜଳୁଥାଏ, ନିଆଁଟା ତାର ଲହ ଲହ ଜିହ୍ୱାରେ ମଶିଣଟାକୁ ଗୋଟିପଣେ ଗିଳି ଦେଉଥାଏ । ଝାଳ ବନ୍ଦୁ ଗୁଡ଼ିକୁ କପାଳ ଉପରୁ ପୋଛୁଥାଣି ଆସନ୍ତି ବିଶ୍ୱାସ ମାଶଲେ ଯୋଗେଶ ପଟ୍ଟନାୟକ-

ଯୋଗେଶ—ବଂଚିଗଲି ମିଶ୍ରେ ! ଗୋଟେ କଳଙ୍କ ଜଞ୍ଜାଳ

ମିଶ୍ରେ—ହେଃ ହେଃ ସେକଥା ଆଜ୍ଞା କହୁଛନ୍ତି ? ଏ ଯେଉଁ ଜଞ୍ଜାଳ ..ହରିହେ...ସବୁ ଗୋବନ୍ଦ ।

ଯୋଗେଶ—ଆଜି କଣ...ପୋଲିସ... ?

ମିଶ୍ର—ପୋଲିସ ? ପୋଲିସର ବାପର କିଛି ଗନ୍ଧ ବାସ୍ନା ପାଇବନି

ଯୋଗେଶ—ତୁମ ସାହାଯ୍ୟ ମୁଁ ଜୀବନରେ ଭୁଲି ପାରିବନି ମିଶ୍ରେ !

ମିଶ୍ର—ହେଃ ହେଃ କି କଥା ଆଜ୍ଞା ! ଯୋଗ୍ଗଟ ମୋଟ ଲୋକଆମେ ଆପଣଙ୍କ ଭଳି ମହାମାନବଙ୍କୁ ଆମେ କି ସାହାଯ୍ୟ କରିପାରିବା ?

ଯୋଗେଶ—ନା ନା, କେବଳ ତୁମରି ସାହାଯ୍ୟରେ ଏ କାମଟା ମୋ ପକ୍ଷରେ ସମ୍ଭବ ହୋଇ ପାରିଲା...ଖାଲି ପୋଲିସ ଆଖିରୁ ଖସିଗଲେ...

ମିଶ୍ର—ଦେଃ ଦେଃ ଲସ୍‌ତ ପାଉଁଣ ହୋଇଗଲାଣି, ଏଥର ପୋଲିସ ଆସୁ, ପାଉଁଣକୁ କ'ଣ ଡ଼ାକ୍ତର ମାଇନା ଭରିବ ? ଛଇନାସ୍ୱକେ ! ଆପଣ ଡ଼ରୁଛନ୍ତି ?

ଯୋଗେଶ—(ହସି) ଡ଼ରିଥିଲେ ମାଇପାଣିଥା'ନ୍ତି ? କେବଳ ମୋ'ର ମାଡ଼ରେ···

ମିଶ୍ର—ସତରେ ଛଇନାସ୍ୱକେ, ଗୃହକର୍ତ୍ତାରୁ ଗୃହଆସି ମଧ୍ୟ ମାଡ଼ର କାଇଦାଟା ଭୁଲି ନାହାନ୍ତି !

ଯୋଗେଶ—ତାପରେ ପୁଣି କଲେଜିଏଟ ଟିଣଟା ଆମକୁ ଦଉଚଇ ବେଲ-

ମିଶ୍ର—ଦେଃ ଦେଃ, ସେଇଟାତ ଅସଲ···

ଯୋଗେଶ—ଆତ୍ମହତ୍ୟାର ପ୍ରମାଣ

ମିଶ୍ର—ଛାଡ଼ନ୍ତୁ, ଯଦିବା କେଶ୍‌ ହୁଏ, ଫାଙ୍କି ଦେବାର ଅନେକ ରାସ୍ତା ଅଛି ।

ଯୋଗେଶ—ମିଶ୍ରେ ! ଘରେ କଣ ପ୍ରମାଣ ରହିଯାଇଛି କି ?

ମିଶ୍ର—ଦେଃ ଦେଃ,, ଆପଣତ ଜଣେ ପୋଖତ ପୋଲିସ, ଆପଣଙ୍କ ଆଖିରୁ ସେ'ଣ ସେଗୁଡ଼ା ଖସିଯିବ ? ନହେଲେ ଚାଲନ୍ତୁ ଥରେ ଆଖି ବୁଲେଇ ଦେବା ।

ଯୋଗେଶ—( ପୋଲିସ ଢୁକିଲି ଶୁଣି ବିବ୍ରତ ହେଲେ) ମିଶ୍ରେ ! ସେ ଜଣ···ପୋଲିସ ଢୁକିଲି ?

ମିଶ୍ର—( ବ୍ୟସ୍ତ ) ହଉହେ, ସଧେ ଗୋବନ୍ଦ, ଚାଲନ୍ତୁ ଶୀଘ୍ର ଏଠୁ, ପଳେଇ ଯିବା···ନହେଲେ···

ଯୋଗେଶ—ଯିବାତ ଚଞ୍ଚିପ୍ସୁ, ହେଲେ···ପୋଲିସ···କାହିଁକି···?

(ଏହି ସମୟରେ ଫାଟି କରି କରି ଆସିଛନ୍ତି ସୋମନାଥ)
ଅଖିରେ ଲୁହର ଶ୍ରାବଣୀ, କଣ୍ଠରେ ବାଷ୍ପଲତା, ସଂପୂର୍ଣ୍ଣ
ଅଧୈର୍ଯ୍ୟ, ଥରଥର ହାତରେ ଭଙ୍ଗା ଟାଙ୍ଗିଆ. ନଜର ଅସ୍ଥିକୁ
ସେ ପୂର୍ବପୂର ପାଣୋର'ଦେଇଥା'ନ୍ତି, ତାଙ୍କର ଏ ଭୟଙ୍କର
ମୂର୍ତ୍ତିକୁ ଦେଖି ସମସ୍ତେ ବ୍ୟତିବ୍ୟସ୍ତ )

ସୋମ–( ଭିତରୁ ) କୁଆଡ଼େ ଯାଉଛୁ, ଯୋଗେଶ ପଟ୍ଟନାୟକ !
( ଆସିଲେ )

ମିଶ୍ର–ଏ···ହେ···କହେ ଜମାଦାରେ, ଯେ୍ କ ବେଶ ?

ସୋମ–ଚୁପ୍‌କର୍ ! କାହିଁ ? କାହିଁ ସେ ଯୋଗେଶ ପଟ୍ଟନାୟକ ?

ଯୋଗେଶ–( ଭୟାର୍ତ୍ତ ଅନ୍ତରରେ ଦମ୍ଭର ଛଳନା ) କଣ
ଦରକାର୍ ?

ସୋମ–( ଯୋଗେଶକୁ ଖୁନ୍ଦିଛନ୍ତି, ଘଣ୍ଟାର ସ୍ବହାଣୀରେ ଧ୍ବଂସ ତାର
ସ୍ପଷ୍ଟଚନ୍ଦ୍ର ) ଯୋଗେଶ ପଟ୍ଟନାୟକ ? କହ, କି ଦୋଷ
କରିଥିଲ୍ ଗୀତା ?

ଯୋଗେଶ–ସେ କୈଫିୟତ ମୁଁ ତୋତେ ଦେଇ ପାରିବନି ?

ସୋମ–ଦେ···ଇ···ପା···ରି···ବୁ··ନି ? ଦେଖିପାରୁଛୁ ଏ
ଟାଙ୍ଗିଆ !

ମିଶ୍ର–ଏ ଏ · ଜମାଦାରେ । ଶୁଣ ହେ ବୁଝିବା···

ସୋମ–ଚୁ ପ୍ କର ! କହ, ଗୀତା ତୋର କ'ଣ କଲା ?

ଯୋଗେଶ–ମୁଁ କହି ପାରିବନି । ( ମିଶ୍ର ଲୁଚି ଖସିଗଲ,
ସୋମନାଥଙ୍କ ଅଲକ୍ଷରେ )

ସୋମ–ଦେଖିପାରୁଛୁ ସେ ନୂଇ, କେମିତି ଦାଉଦାଉ ହୋଇ
ଜଳୁଛି । ସେହି ନୂଇରେ ତୁ ଜଳିବୁ, କହ ! ମୋ ସ୍ତ୍ରୀକୁ

ଖାନ୍ତ ସହେଇଲୁ, ମୋ ସ୍ବାମୀଙ୍କୁ ଛଡ଼େଇଲୁ, ଶେଷରେ ମୋ'ର ସର୍ବସ୍ୱକୁ ନେଇ ମୋତେ ଦାଣ୍ଡର ଭିକାରୀ ସଜେଇଲୁ , ତଥାପି ଶାନ୍ତି ପାଇଲୁନି ? ଆଜ ମୋର ହୃତପିଣ୍ଡଟାକୁ ପୋଡଦେଲୁ ?

ଯୋଗେଶ-ମୁଁ କିଛି ଜାଣେନା, ।

ସୋମ-ଜାଣିନୁ ? ମଦୃଷ୍ଟି ଦୁଏଇ ଭାଲ, କିନ୍ତୁ ସେ କେବେ ଭୁଲ ଦେଖେନା ।

ଯୋଗେଶ-( ଅପ୍ରସ୍ତୁତ ହୋଇ ) ହଁ ଜୀବନ ପ୍ରତିଦ୍ୱନ୍ଦିତାରେ ତିଷ୍ଠିବା ପାଇଁ ଏ ସବୁ କରଯାଏ ।

ସୋମ-( ରଗିଗଲେ ) କଣ କହିଲୁ ? ଜୀବନ ? ପ୍ରତିଦ୍ୱନ୍ଦିତା ? ( ଆଗେଇଲେ )

ଯୋଗେଶ-( ଘାବ୍‌ଡ଼ିଗଲେ ) ଆଜ୍ଞେ··· ? ଏ···କଣ··· ? ସମୁଖ ?

ସୋମ-( ହସିଉଠିଲେ ) ସମୁଖ ! ଆହୁରି ଜୋରରେ ଡାକ୍ କଣ୍ଠ ଫଟେଇ ଡ଼ାକ୍ !

ଯୋଗେଶ-ମୋତେ କ୍ଷମାକର ! ( ପଛେଇ ଯାଉଥିଲେ )

ସୋମ-କ୍ଷମା ? ହାଃ ହାଃ ହାଃ ।

( ଯାଉଥିବା ସମୟରେ ପଛରୁ ପୋଲିସ Firing ସୋମନାଥଙ୍କ ହାତରୁ ଟାଙ୍ଗିଆ ଖସିପଡ଼ୁଛି । କନେଷ୍ଟେବଲ୍ ଦୌଡ଼ିଆସି ସୋମନାଥଙ୍କୁ ଧରି ନେଇଛି, ସୁରେଶ, ପୋଲିସ S. I. ଓ ମିଶ୍ର ଆସିଛନ୍ତି )

ସୋମ-( ଚମକିଯାଇ ) କିଏ ? ମୋତେ ଛାଡ଼, ମୁଁ···ମୁଁ··· ( ଛଡ଼େଇବାକୁ ଚେଷ୍ଟା କରୁଥାନ୍ତି )

ସୁରେଶ-( ଖୁଣ୍ଣା ଓ ବରକ୍ତରେ ) କନେଷ୍ଟବଳ ! ଏାକୁ
ଥାନାକୁ ନେଇଯା !

ସୋମ-କଏ ? ସୁରେଶ ? ବାଃ ବାଃ ପିତୃଭକ୍ତ ରାମଚନ୍ଦ୍ର !

କନ୍‌ଷ୍ଟେବଲ୍—( Hand Cuff ପିନ୍ଧାଇ ) ଗ୍ଲଲ

ଯୋଗେଶ—ସୁରେଶ, ସେ ଯେମିତି ଆଉ release ନ ହୁଏ !

ସୋମ—ଫାଶୀ ଖୁଣ୍ଟକୁ ଯିବାପାଇଁ ଆସିଥିଲି, ଯିବି କିନ୍ତୁ
ଅତୃପ୍ତ-ଅମ୍ଭାରେ ।

ସୁରେଶ—ଛି ! ଛି ! ନେଇଯାଅ ଏ murderer କୁ !

ସୋମ—Murderer ? They are the murderer
ମୋ ଝିଅକୁ ସେମାନେ କରେସିନ ଢ଼ାଳ ଜଳେଇଦେଲେ ମୁଁ
arrest ହେଲି, ଧନ୍ୟ ଆଇନ୍, ଆଜ ଧନ୍ୟ ବ ସେ
ଭଗବାନ !! ସୁରେଶ, ମୁଁ ଯିବା ପୂର୍ବରୁ କହିଯାଉଛି,
ଆଇନ୍‌ର ଜଗୁଆଳ ହୋଇ ଆଇନ୍‌କୁ ଖୁନ କରବନ ।

ମିଶ୍ର—ହଉ, ଯାଅ ଯାଅ ଜମାଦାରେ, କଥାତ ଶୁଣିଲନ, ଏବେ
ଆରାମରେ ବସି ଘଣ୍ଟା ପେଲିବ, ହେଲେ ··ହେଃ ହେଃ
ଉପାସରେ ରହିବନ ।

ସୋମ-ମୋ ଝିଅ ହେଲେ ବ ଗୀତା ତୁମର ସ୍ତ୍ରୀ. ତାକୁ ଏମାନେ
ପୋଡ଼ି ପୋଡ଼ି ମାରଦେଲେ. ତୁମେ ଜରବରେ ସହିଯାଉଛ ?
ତୁମ ଦେହରେ ରକ୍ତ ନାହିଁ ସୁରେଶ ମୋର ୬୦ ବର୍ଷର
ପୁରୁଣା ରକ୍ତ ଟକ ମକ୍ ହୋଇ ଫୁଟିଯାଉଛି. ଆଉ···
ତୁମେ··· ?

ଯୋଗେଶ—କନେଷ୍ଟବଳ ( ନେଇଯିବାକୁ ଇସାରା )

ମିଶ୍ର—ନେଇଯାଅ ହେ ! ତା ମୁହଁ ଚାହିଁବାକୁ ଲାଜ ଲାଗୁଛି !

ଧୋମ—ମୁଁ ଯାଉଛି, କିନ୍ତୁ ସୁରେଶ ! ଆଉ ଏମାନଙ୍କୁ କେବେ ହାତକୁ
  ନେବାକୁ ଚେଷ୍ଟା କରିବନି ।

କନ୍‌ଷ୍ଟେବଲ ଭଜେ ଗୁଲ ଗୁଲ (ଧୋମନାଥଙ୍କୁ ଟାଣି ନେଇଗଲେ)

ଯୋଗେଶ—ଛି ! ଛି ! ଲୋକଟା ପଶୁ ପାଲଟି ଗଲାଣି ।

ମିଶ୍ର - ହେଃ ହେଃ, କାଞ୍ଚନ ଘଣ୍ଟାଟେଲ ଗୁଟ ଖାଇଲେ ମଣିଷ
  ହୋଇଯିବ ଯେ ।

ଯୋଗେଶ -କାହିଁର ସୁରେଶ ! ତୁ କେମିତି … ?

ସୁରେଶ—ଗୋଟେ ଦଗୀର ପିଛୁ କରୁଥିଲୁ ଯେ…

ମିଶ୍ର - ହେଃ ହେଃ, ମୁଁ ତ ଯାଇ ପହଞ୍ଚିଗଲି …

ଯୋଗେଶ—ସତରେ ସେଟା ଯେମିତି ରୂପ ଧରିଥିଲା…କେବଳ
  ସୁରେଶ ପାଇଁ ..

ମିଶ୍ର—କହିଗଲେ ପଞ୍ଚନାପୁଳେ, ନଦେଲେ……ହାଇଦେ,
  ସଧେସତ୍ୟାଳନ ।

ସୁରେଶ—( ସନ୍ଦେହରେ ) ଏତେ ସତରେ ପୁଣି ଏଠି ?

ଯୋଗେଶ ସତ ଭିତରେ ସବୁ କାମ ନ ସାରିଲେ, ପୋଲିସ…

ସୁରେଶ ଗୀତା କ'ଣ ସତରେ · ?

ମିଶ୍ର—ହେଃ ହେଃ ସବୁ ସରିଯାଇଛି ।

ସୁରେଶ - ବାପା ! !

ଯୋଗେଶ—ସବୁବେଳେ ଗୋଟେ ଅଶାନ୍ତି ସୃଷ୍ଟି କରିବା
  ଅପେକ୍ଷା ..

ମିଶ୍ର - ମରିଯିବାହିଁ ଭଲ…ହେଃ ହେଃ…

ସୁରେଶ—କ'ଣ, Suicide ?

ଯୋଗେଶ—ହଁ…ହଁ…ମାନେ… Suicide

ସୁରେଶ— ପଶୀ · ? ( ଗଳାରେ ଆଦ୍ରତା )
ମିଶ୍ର—ବ୍ୟସ୍ତ ହୁଅନ ବାବା ! ମୁଁ ବନ୍ଦୋବସ୍ତ କରି ରଖିଛି, ପରୀପାଇଁ ମା' ଦେଖି ଭଲ ହିଁଅଛି ଏ ।
ଯୋଗେଶ—ଧାହାହେଉ ମିଶ୍ରେ ! ତୁମକୁ ଦେଖି ଦାଦୁଁରି ଲାଗିଲା, ଯେମିତି ତେଜ ଏଇ ମାସ ଭିତରେ···
ସୁରେଶ—ତାହେଲେ···ମୁଁ ଆସୁଛି
ଯୋଗେଶ- ତୁ କଣ ·· ?
ସୁରେଶ - ମୁଁ ଥାନ କୁ ଯିବି ।
ମିଶ୍ରେ—ତାହାଲେ ଆମେ ଏବେ ଘରକୁ ଫେରିଯିବା ପଣ୍ଡାସୁକେ !
ଯୋଗେଶ - ହଁ, ସୋମନାଥ ମହାନ୍ତ ଯେମିତି ସହଜରେ ନ ଆସେ ।
ସୁରେଶ - ମୁଁ ଚେଷ୍ଟା କରିବ, କିନ୍ତୁ ··ପରୀ··· ?
ଯୋଗେଶ—ଆରେ, ତୁ ବ୍ୟସ୍ତ ହଉଛୁ କାହିଁକି ? ମୁଁ ଅଛି-
ମିଶ୍ର—ହଁ ହଁ, ଆପଣତ ବର୍ତ୍ତମାନ ତା ପାଇଁ ବାପ ମା ଉଭୟ···
ଯୋଗେଶ— ଆସ ମିଶ୍ରେ !
ମିଶ୍ର—ଚାଲନ୍ତୁ ହେଃ ହେଃ···

( ପଣ୍ଡାସୁକ ମିଶ୍ର ଚାଲିଗଲେ. ସୁରେଶ ନୀରବରେ ଛିଡ଼ାହେଲେ କିଛି ସମସ୍ତ ଜଗିର ସିଢ଼ୀରେ ନିର୍ଜନତାର ସୁଯୋଗ ନେଇ ପେଚ୍ଚ ଓ ବାଲୁଆ ବେଳେ ବେଳେ ଚମକ ଉଠୁଥା'ନ୍ତି । ସୁରେଶ ଖୁଣ୍ଟିଲେ ଜୁଇକୁ । ପାଖକୁ ଗଲେ କେତେ କ'ଣ ଭାବୁଥାନ୍ତି । ଅମାବାସ୍ୟା ଲୁହଟା ଆଖି ଫଟେଇ ବାହାରି ଆସୁଚାଏ, ଥରେ ଆକାଶକୁ, ଥରେ ଜୁଇକୁ ଆହୁରେ ଜୁଇଅଙ୍କୁ ଗୁହି ବହୁତ କିଛି ଭାବୁଥାଲା, ଏହି ସମୟରେ ) —

ଯୋଗେଶ—( Voice ) ସବୁବେଳେ ତୋଟେ ଅଶାନ୍ତ ସୃଷ୍ଟି କରିବା ଅପେକ୍ଷା...

ମିଶ୍ର – ( Voice ) ମରିପିବାହିଁ ଭଲ ।

ଯୋଗେଶ – ( Voice ) ହଁ ହଁ ମାନେ Suicide

ଯୋମ – ( Voice ) ମୋ ଝିଅ ହେଲେ ବ ତୁମ ସ୍ତ୍ରୀ ଗୀତା ।
ତାକୁ ଏମାନେ ଯୋଡ଼ ଯୋଡ଼ ମାରିଦେଲେ···? ତୁମ ଦେହରେ ରକ୍ତ ନାହିଁ ସୁରେଶ, ମୋର ୬୦ ବର୍ଷର ପୁରୁଣା ରକ୍ତ ଟଗ୍‌ବଗ୍ ହୋଇ ଫୁଟି ଯାଉଛି, ତୁମେ ? ତୁମେ ଶ୍ରିତୁ ! ତୁମ ଦେହରେ ରକ୍ତନାହିଁ ।

ସୁରେଶ—ଓଃ ନା ଗୀତା ··· ସତରେ ( ଏହି ସମୟରେ ଜଙ୍ଗଲ ଭିତରୁ ଗୀତାର ଗ୍ଲୋବଟିଏ ବାହାରି ଆସିଲା । ଧଳା ଶାଢ଼ୀରେ ବେଷ୍ଟନୀକୁ କରିଦେଇ, ମୁକୁଳା କେଶ ଗୁଛରେ ନାଲି ସିନ୍ଦୂରକୁ ବୋଳି ଦେଇ ଖିଲ ଖିଲ କରି ହସି ଉଠିଲା । ଗ୍ଲୋବଟା ସୁରେଶ ଚମକି ଉଠିଲେ )

ଗ୍ଲୋ— ( ହସି ) ମୁଁ ! ଏକ ଅତୃପ୍ତ ଆତ୍ମା ।

ସୁରେଶ – (ଭୟଙ୍କର ଭାବରେ ଡ଼ରିଗଲେ ) ଗୀତା !

ଗ୍ଲୋ – You Shutup !

ସୁରେଶ – ମୋତେ ଚିହ୍ନି ପାରୁନ !

ଗ୍ଲୋ ( ହସି ) ତୁମକୁ ଚହ୍ନିବିନ ? ତୁମେତ ସେହି ପୌରୁଷ କେଖି ଖଣ୍ଡା ! ଯା ଠାରୁ ବଳି ବଡ ପରିଚୟ ତୁମଠାରେ ଆଉ ଅଛି କଣ ?

ସୁରେଶ – ମୁଁ ··· କଣ ··· ?

ଗ୍ଲୋ—ତୁମେ ··· ତୁମ ବାପା, ଓଃ ତୁମେ କ ନଷ୍ଟୁର ! ତୁମ

ହୃଦସ୍ପଦରେ ଟିକଏ ଦୟା ନାହିଁ ? ସାମାନ୍ୟ କେତୋଟା ଟଙ୍କା ପାଇଁ ଏତେ ଯନ୍ତ୍ରଣା ଦେଇ ପାର ତୁମେ ? ଯୌତୁକ ପାଇଁ ତୁମେ ମୋତେ ନିର୍ମମଭାବରେ ହତ୍ୟା କରିଛ, ନିର୍ଦ୍ଦିଷ୍ଟ ଭାବରେ କେତେ ଅତ୍ୟାଚାର କରିଛ, ମୁଁ ସବୁ ସହିଛି. ଆଉ ତୁମେ, ନୀରବ ଦ୍ରଷ୍ଟା ହୋଇ ସବୁ ଅତ୍ୟାଚାରକୁ ନୀରବରେ ଉତ୍ସାହିତ କରିଛ ।

ସୁରେଶ–ମୁଁ ··· ମୁଁ ଆଉ କ'ଣ କରିଥାନ୍ତି ?

ଗୀତା– ତୁମେ ଖୁନି ! ପିତୃଭକ୍ତିର ଛଳନା କରି ଯୌତୁକ ଭଳି ଗୋଟିଏ ସମାଜ ବିରୋଧି ପ୍ରଥାକୁ ତୁମେ ନୀରବରେ ସମର୍ଥନ କରି ଚାଲିଛ ! ତୁମେ ପରା ଆଇନର ପ୍ରହରୀ । ପୁଣି ଆଇନକୁ ଖୁନ୍ କରୁଛ କପରି ? ମୋ ବାପା ଯାଇଥିଲେ ନ୍ୟାୟ ମାଗିବାକୁ, କିନ୍ତୁ ତୁମେ, ତାଙ୍କୁ Arrest କଲ ?

ସୁରେଶ–( ଅପ୍ରସ୍ତୁତ ହୋଇ ) ନା ନା ମୁଁ ···

ସୋମ—( Voice ) ଆଇନର ଜଗୁଆଳି ହୋଇ ଆଇନକୁ ଖୁନ୍ କରୁଛ କପରି ?

ସୁରେଶ—( ପାଖକୁ ଯାଉଥିଲେ, ଗୀତା ଦୂରେଇ ଯାଉଥାଏ ) ଗୀତା ! ······

ଗୀତା—ଯାହା ତୁମକୁ ଲାଗିଲା, ତା'ର କଷ୍ଟ ଦେଲେ ମୁଁ ତୁମକୁ ଶାସ୍ତି ଦେବ ।

ସୁରେଶ—ଗୀତା ! ଫେରିଆସ ( ଯାଉଥିଲେ କିନ୍ତୁ ଗୀତା ଅଦୃଶ୍ୟ ହୋଇଗଲା )

ମିଶ୍ର—( Voice ) ମୁଁ ବନ୍ଦୋବସ୍ତ କରି ରଖିଛୁ ପରୀ ପାଇଁ ମା'
ହେଲା ଭଲ ଝିଅଟିଏ ।

ଯୋଗେଶ ( Voice ) ଯାହାହେଉ ତୁମକୁ ସେଇ ଦାମ୍ଭିଛ
ଲଗିଲା ।

ସୋମ ( Voice ) ତୁମ ଦେହରେ ରକ୍ତ ନାହିଁ । ମୋର
୭° ବର୍ଷର ପୁରୁଣା ରକ୍ତ ଠକ୍‌ମକ୍ ହୋଇ ଫୁଟି ଯାଉଛି ।

ଗୁଇ – ( Voice ) ତୁମେ ଚଗ ଆଇନ୍‌ର ପ୍ରହରୀ ?

ସୋମ – ( Voice ) ପୁଣି ଆଇନକୁ ଖୁନ୍ କରୁଛ କଥଣ ?
ଆଇନ୍‌କୁ କେବେ ହାତକୁ ନେବାକୁ ଚେଷ୍ଟା କରିବନ !
ତୁମ ଦେହରେ ରକ୍ତ ନାହିଁ ! ତୁମ ଦେହରେ ରକ୍ତ ନାହିଁ !

ଗୁଇ – ତୁମେ ଖରୁ ! ତୁମେ ଖରୁ !

( ବାରମ୍ବାର Voiceରେ ପୁରେଶ ବବ୍ରତ ହୋଇ ପଡ଼ିଲେ,
କୁଆଡ଼କୁ ଦୌଡ଼ି ଯାଉଥିଲେ ଏହି ସମୟରେ ପରୀ'ର
'ବୋଉ' 'ବୋହ' ଡାକ ଶୁଭିଲା ।

ଅନ୍ଧାର–

## ॥ ଅଷ୍ଟମ ଦୃଶ୍ୟ ॥

ରଙ୍ଗପାଟଣା ଗାଁ'ର ରାସ୍ତା, ଖୁବ୍ ଅନ୍ଧାରିଆ ନୁହେଁ। ବରଗଛ ତଳଦେଇ କେତେ ପଦଧୂଳିକୁ ଛୁଉଁଛି ଧଳ ନଈ କୂଳକୁ ଦୌଡ଼ୁଛି। ସମସ୍ତ ରାସ୍ତା, ଅମର ଆସୁଛି ପାଣି **ଭଲ ଭଲ—**

**ଅମର**—ଏମାନେ କାଳେ ଡ୍ରାମା କରିବେ! ରାତି ଆସି ଆଠ ହେଲାଣି, ଏଯାଏ ଷ୍ଟେଜ୍ ସେଟିଂ ସରିନ, କେଉଁଠି କିଛି କରିବେନ। ସବୁ କରିବି ମୁଁ, ସୁଦା ଉଠେଇବି ମୁଁ, ଷ୍ଟେଜ ବାନ୍ଧିବି ମୁଁ, Direction ଦେବି ମୁଁ, ପାର୍ଟ ଭଲ ହେଲେକୁ ଶପେ ହେବେ, ମୋ ଭାଗକୁ ସେଇ Villain, ଭଏଲେନ୍ ଶେଷରେ ଯୋଦ୍ଧାଙ୍କ ମାଡ଼, ଘରୁ ବୁଢ଼ାଠୁ ମାଡ଼, କ୍ଲବରୁ Artist ମାନଙ୍କଠୁ ମାଡ଼, ପୁଣି ଏଠୁ ଆପଣମାନଙ୍କଠୁ ମାଡ଼ ମାଡ଼ ଖାଇବି ତ ମୁଁ ଗୋଟେ ମାତ୍ର ପିଠି, ନା, ଆଉ Acting କରିବିନ।

**ମିଶ୍ର**—(ପ୍ରବେଶି) କଅଣ, ମେନେଜର!

**ଅମର**—(ଫେରି ବୁଝିଁ ବିରକ୍ତିରେ) ଡ୍ରାମା ସରିଗଲା

**ମିଶ୍ର**—କଣ କହୁଛୁ!

**ଅମର**—ତମର ସମ୍ଭାବାଟ କହୁନାହିଁ!

**ମିଶ୍ର**—ବାବୁଙ୍କର ତ ସରେ ଦେଖା ମିଳିବନ, ପୁଣି ଦୁଃଖ ସୁଖ ହେବା କେମିତି?

**ଅମର**—ହଉ, ଡ୍ରାମାଟା ସରିଯାଉ, ଦୁଃଖ ସୁଖ ହେବା।

ମିଶ୍ର—କେତେଦିନ ଏ ନାଟ ଚାଲିଥିବ ?

ଅମର—ଯେତେଦିନ ତବଲା ବାଜୁଥିବ ।

ମିଶ୍ର—କଣ କହିଲୁ ?

ଅମର - ତୁମେ ତବଲା ବଜାଉଛ, ମୁଁ ନାଚୁଛି, ତେଣୁ ନାଚ ବନ୍ଦ କରିବାଟା ତୁମ ହାତରେ —

ମିଶ୍ର—ତୁ ମୋ ସହିତ ଥଟ୍ଟା କରୁଛୁ !

ଅମର - ଭଲ କଥାଟାକୁ ତୁମେ ଯଦି ଥଟ୍ଟା ବୋଲି ଭାବିବ, ମୁଁ ନିରୁପାୟ ।

ମିଶ୍ର—ଭଲକଥା ? ତୋ କଥାରେ ମୁଁ ତବଲା ବଜାଉଛି, ଏଇଟା ଭଲକଥା ?

ଅମର—ଆଉ କଉନା ଦଶହଜାର୍, ମୁଁ ଗୋଟେ ଟେମ୍ପୋ ଆଣି ପି ପି କରନ୍ତି, ନ ଦେଲେ ଦଉନା କୋଡ଼ିଏ ହଜାର ଗୋଟେ ଟ୍ରଲର୍ ଆଣି ବ୍ରହ୍ମପୁରରୁ ଲଙ୍କାପିଗୁଡ଼ାକୁ କଲିକତା ସହରବଜାରକୁ ପଠେଇ ଦଅନ୍ତି । ତା' ନ ଦେଲେ ଖୁବ୍ ଶସ୍ତା ଉପରେ ଦଉନ ପାଞ୍ଚ ହଜାର ତାହାକୁ ଦେଇଲେ ବୋଷ୍ ବାସ୍ ଦେଇ ପିଅନ କାମ୍ଟା ଚଟସ୍କିଣି ଟିଏ କରିଦାନ୍ତି ।

ମିଶ୍ର—ଜରେ, ବାପା, ମେଡ଼େନ୍ସର ! ତୋତେ ଏତେ ପାଠ ପଢ଼ାଇଲି, ଶେଷରେ ହଜାର ହଜାର ଟଙ୍କା ଘୁଷ୍ ଦେଇ ଚପରାଶି ହେବୁ !

ଅମର—କଣ ଆଉ କରିବ, ପାଠ ଯିମା ପଢ଼ାଇଲ, କିନ୍ତୁ ଅଭ୍ୟାସଟା ବଦଳାଇ ପାରିଲନି, ହେଥିପାଇଁ ଚପରାଶି ଛଡ଼ା ଆଉ କଣ ମିଳିବ

ମିଶ୍ର—ହଉ ଦେଖିବା, କ'ଣ କହୁଥିଲୁ··· ?

ଅମର–ଶୀଘ୍ର ସରିଗଲେ ଭଲ ।

ମିଶ୍ର—ହେଃ ହେଃ, ଗୋଟେ ଭଲ ଖବର ଆସିଛି ।

ଅମର—ଖବର ? କାଗଜରୁ ନା ରେଡ଼ିଓରୁ ?

ମିଶ୍ର—ହରଦେ ବଧେ ଗୋବନ୍ଦ, ଖବର ନୁହେଁ ପ୍ରସ୍ତାବ, ବାହାଘର ପ୍ରସ୍ତାବ ।

ଅମର—ବାହାଘର ପ୍ରସ୍ତାବ ? ମୋ ଦ୍ଵାରା ହୋଇ ପାରିବନି । ମୁଁ ମନ୍ତ୍ର ସବୁ ଭୁଲି ଗଲଣି ।

ମିଶ୍ର—ଚ୍ ଚ୍ ! ବ୍ରାହ୍ମଣେ ମନ୍ତ୍ର ପଢ଼ିବେ, ତୋର ସେଥିରେ କ'ଣ ଅଛି ?

ଅମର–ମନ୍ତ୍ର ପଢ଼ିବେ ବ୍ରାହ୍ମଣ ଆଜ୍...ମୁଁ ?

ମିଶ୍ର—ବାହା ହୋଇପିବୁ ।

ଅମର—ଓ...ବାହାଘରଟା ତେବେ ମୋର ହେବ ?

ମିଶ୍ର—ମୁଁ ବୁଢା ହେଲି, କେତେବେଳେ କ କଥା, କାମଟା ସରିଗଲେ ..ଏଣେ ଜାଗାଟାବ ଯିମିତ ଖାନ ଦାନଆ । ମୋ ମନଟା ଭଲକ ପାଇ ଯାଇଛି । ଝିଅଟି ବଡ ଧୀର, ଲକ୍ଷ୍ମୀତ...

ଅମର—ହଇ...(ବ୍ଲୁଲପାଂଜଥିଲେ)

ମିଶ୍ର—କଟରେ, କଣ କରବା ? ସେମାନେ କାଲି ଆସିବେ ।

ଅମର—କାଲି ଆସିବେ ? ତା ହେଲେ ଆଜ ସବୁଥୁ ଡ଼ମାଣ୍ଡ ଆଉ ଯୌତୁକର ଲମ୍ବା ଲଷ୍ଟଟା କରବାର ବନ୍ଦୋବସ୍ତ କର ।

ମିଶ୍ର—ଆରେ, ସେ କାମ ମୁଁ ଆଉ ବାକ ରଖିଛନା ? ଖାଲି ତୋର ମତ...

ନେପଥ୍ୟ—ଆଜର ନାଟକ ଆରମ୍ଭ ହେବାକୁ ଯାଉଛି ।

ଅମର—( ବ୍ୟସ୍ତରେ ) ଆରେ, ଡ଼ାମା ତ ସୁରୁ ( ଗୁଲି ଯାଉଥିଲେ ) ମୋର ଏ ଯାଏ ମେକ୍‌ଅପ୍ ସରିନ !

ମିଶ୍ର—ଜରେ, ତାଙ୍କୁ କ'ଣ କହିବ ? ( କିଛି ନଶୁଣିଲା ପରି ଯାଉଥିଲା ଅମର ) ଜରେ ମେଡ଼େନ୍ଦ୍ର !

ଅମର—( ବିରକ୍ତରେ ) ସେ ସନ୍ନ୍ୟାସୀ ହେବାକୁ ବାହାରିଗଲା, ତେଣୁ ବାହା ଭୋଜି ବନ୍ଦ୍ ( ଅମର ଗୁଲିଯାଉଛି )

ମିଶ୍ର—ହଣହେ, ସଧେ ଗୋବିନ୍ଦ, ଗଲା କୁଳାଙ୍ଗାରଟା ଖରାପ ହେଇ, ବୁଝାଇଲେ କ'ଣ ବୁଝୁଛି ? ଏ ଥେଟରରେ ମାତ ସେଟା ବେଶି ଖରାପ ହୋଇଗଲା, ହେ ପ୍ରଭୁ ! ସଧେ ଗୋବିନ୍ଦ, ତୁମେ ହିଁ କେବଳ ଭରସା !

(ଗୁଲିଯାଉଥିଲେ ଆସିଛନ୍ତି ଇନ୍ଦ୍ରଜିତ)

ଇନ୍ଦ୍ର—ନମସ୍କାର ମଉସା !

ମିଶ୍ର—ଜରେ, ବାପ ! କୁଆଡ଼େ ଥିଲ ? ନତ ନତ ଫେରି ଫେରି ମୋ ମନ ଖରାପ ହୋଇଗଲାଣି ।

ଇନ୍ଦ୍ର—ମୁଁ ଗୋଟେ important କାମରେ ଦିଲ୍ଲୀରେ ଥିଲି, ତେଣୁ ଦେଖା ହୋଇ ପାରିଲାନ ।

ମିଶ୍ର—ଓ···ହ · ସେଇଥିପାଇଁ ସବୁ ଗୋଳମାଳିଆ ହୋଇଗଲା, ନହେଲେ ମୁଁ ଯେମିତି ଖିଆ ପିଆ ଛାଡ଼ି ଅଣ୍ଡା ଭଡ଼ଥିଲ, ଏତେବେଳକୁ···

ଇନ୍ଦ୍ର—ମୁଁ ଆପଣଙ୍କୁ ଜାଣେ, ଆପଣ ମୋ ପାଇଁ···

ମିଶ୍ର—ଜୀବନ ଦେଇଦେବ । ସେମିତି ଲଗି ନଥିଲେ, ସୋମନାଥ ମହାନ୍ତି ଆଜି ଜେଲ ଯାଇଥା'ନ୍ତା ?

ଇନ୍ଦ୍ର—ଜେଲ ? ?

ମିଶ୍ର—ଆଜ ଟିକଏ ଡେ଼ର ହୋଇଥିଲେତ ଫାଶି ପାଇଥା’ନ୍ତା,
ଖାଲି ମୋ’ର ପାଇଁ ବଞ୍ଚିଗଲା ।

ଇନ୍ଦ୍ର—କେମିତି ? କ’ଣ ହେଲାକ ? ସୋମନାଥ ମଉସା···

ମିଶ୍ର ହେଃ ହେଃ, ତୁମେ ବାପ ତା’ର ଅସଲ ରୂପ ଦେଖିନା,
ଆଜି ଟିକଏ ଡେରି ହୋଇଥିଲେ ହାଣି ଦେଇଥା’ନ୍ତା
କ କ’ଣ ?

ଇନ୍ଦ୍ର—ଶୁଣ, ମଉସା ! ମୁଁ ଦିଲ୍ଲୀର ଗୋଟେ exhibitionରୁ
ଖଣ୍ଡେ ଶାଢ଼ୀ କିଣିଥିଲି । ବହୁତ ଦିନ ହେଲା ମୁଁ ଗୀତାକୁ
କହୁ ଦେଇନ । କୌଣସି ମତେ ଏ ଶାଢ଼ୀଟା ତାକୁ
ଦିଅନ୍ତୁ—

ମିଶ୍ର—ଗୀତା ! ସିଏ କଣ ବାପା ଆଉ ଅଛି ?

ଇନ୍ଦ୍ର—ମାନେ ?

ମିଶ୍ର—ପୋଲିସର ଅଛାଡୁଆ କୋଠି ଭିତରେ ସେ ନିଜକୁ
ବଂଚେଇ ପାରିଲାନି ।

ଇନ୍ଦ୍ର—ମଉସା ! ଗୀତାକୁ···ମୁଁ ତାହେଲେ ଦେଖି ପାରିଲିନି··· ?

ମିଶ୍ର—କଣ କରିବା ? ଶ୍ୱଶୁର ଘରୁ ସୋମନାଥ ମହାନ୍ତିକୁ
ବାରମ୍ବାର ସାହାଯ୍ୟ କରି ଧରା ପଡ଼ିଲା, ଶେଷରେ
ଆତ୍ମହତ୍ୟା ଛଡ଼ା ଅନ୍ୟ ଉପାୟ ନଥିଲା ।

ଇନ୍ଦ୍ର—ମଉସା ! ଏ ଦୁଃଖ ମୁଁ ସହି ପାରିବନି । ଏଥର ମୁଁ
ଖାଲି ହାତରେ ଫେରିବନି ।

ମିଶ୍ର—ନା, ପ୍ରତିଶୋଧ ନେବାର ଅନେକ ରାସ୍ତା ଅଛି,
ବ୍ୟସ୍ତ ହୁଅନ ।

ଇନ୍ଦ୍ର—ମୋଠାରୁ ମୋ ବାପ, ମା, ଭଉଣୀ ସମସ୍ତଙ୍କୁ ଛଡ଼େଇ

ନେଇଛନ୍ତି । ମୁଁ···ତାଙ୍କୁ···

ମିଶ୍ର— ଆ··· ହାଁ··· ଏମିତ ବସିଲେ ତୋଳସ ହାବୁଡ଼ରେ ପଡ଼ିବା, ଫଳ କହୁଛି ଦେଖନ୍ତୁ । ଟାଲ ନେଇ କଥା ହେବା କଥା ।

ଇନ୍ଦ୍ର—ତାହାଲେ···?

ମିଶ୍ର— ଯୋଗଣ ଡାକର ମାଛ ଖାଇବା, ଦେହରେ ଟିକଏ ପାଣି ବ ଲାଗିବନି, ହେ

ଇନ୍ଦ୍ର—ମୁଁ, ଆଜ, ଏଇ ମୁହୂର୍ତ୍ତରେ ଗୋଟିଏ ମୁକାବଲା ଚାହେଁ, ହୁଏତ···

ମିଶ୍ର—ଆସ, ମୁଁ ତାର ବ୍ୟବସ୍ଥା କରୁଛି ।

ଇନ୍ଦ୍ର— ମୋ ସହିତ କାଲି ଯିବାକୁ ପଡ଼ିବ ।

ମିଶ୍ର— ହେଃ ହେଃ ହଇହେ, ସଧେ ଗୋବନ୍ଦ, ଆସ ।

(ଦୁହେଁ ଚାଲିଗଲେ, ପଛରୁ ଆସିଛନ୍ତି ଯୋଗେଶ ପଟ୍ଟନାୟକ, ମୁହଁରେ ହତାଶାର ଛାୟା । କ୍ଳାନ୍ତ ଦୂର ପାଠ ସିଗାରେଟ୍ଟିଏ ଲଗାଇଛନ୍ତି, ବିପରୀତ ଦିଗରୁ ଆସିଛି ଶଙ୍କର)

ଶଙ୍କର—ଜୁହାର ଆଜ୍ଞା !

ଯୋଗେଶ— କିରେ ଶଙ୍କର ! ଏତେବେଳେ ଫେରୁଛୁ ଯେ-.

ଶଙ୍କର-ନାହିଁ ଆଜ୍ଞା ! ···ବେଙ୍କ୍ କାମତ ଚେଣ୍ଟ ··

ଯୋଗେଶ—କାମ ସରିଗଲା ?

ଶଙ୍କର—ହଁ, ଆପଣଙ୍କ ଦୟାରୁ ସବୁ ଠିକ୍ ହୋଇ ଯାଇଛି ଖାଲି ଭାଙ୍ଗି କଣିବା କଥା ।

ଯୋଗେଶ—ବେଶ୍ ଭଲ ହୋଇଛି, ଆଚ୍ଛା ଶଙ୍କର ! ମୁଁ କଣ କହୁଥିଲି କି, ଭୂତ ଅନେକ ଆଗେ ବୁଲୁଛୁ, ସୁରେଶକୁ

କେବେ କେଉଁଠି ଦେଖିଛୁ କି ?

ଶଙ୍କର—ମାନେ, ବଡ଼ବାବୁ

ଯୋଗେଶ—ହଁ ।

ଶଙ୍କର—ସିଏ କଣ ଆଜ୍ଞା ଫେରି ନାହାନ୍ତି ?

ଯୋଗେଶ—ନା'ରେ ଶଙ୍କର ! ପିଲାଟିକୁ ନେଇ କୁଆଡେ ଯେ ଯାଇଛନ୍ତି, ଖୋଜି ଖୋଜି ଆମେ ହତାଶ ହେଲୁଣି ତଥାପି କୌଣସି ଖବର ପାଇ ପାରୁନୁ ।

ଶଙ୍କର—( ମନେ ପକାଇ ) ମୁଁ ତ ଥରେ ତାଙ୍କୁ ଟ୍ରେନ୍‌ରେ ବସିଥିବାର ଦେଖିଥିଲି ।

ଯୋଗେଶ—ଟ୍ରେନ୍‌ରେ ? କେବେ ? କେଉଁଠି ?

ଶଙ୍କର—ମାସେ ହବ ସାନ୍ ପୁଅଙ୍କୁ ନେଇ ବରହମ୍‌ପୁର ଯାଉଥିଲେ ।

ଯୋଗେଶ—ତୁ ଭଲକି ଦେଖିଛୁ ?

ଶଙ୍କର—ମୁଁ ପରି ପଚାରିଲି । ସେ କହିଲେ ବରହମପୁର ଯାଉଛନ୍ତି ବୋଲି । ପୁଅକୁ ମୋଠୁ ବାଦାମ କିଣି ଦେଲେ ।

ଯୋଗେଶ—ସେ ତାହାଲେ ··· ବରହମ୍‌ପୁର ··· ସୁବୋଧ ତ ଯାଇଛି···

ଶଙ୍କର—ଆଜ୍ଞା ! ବାବୁ କଣ ଘରୁ ରାଗି ରୁଷି ଯାଇଛନ୍ତି ?

ଯୋଗେଶ—ରାଗିଯିବ କାହିଁକି ? ବାବୁଙ୍କର ସ୍ତ୍ରୀ ମରିଗଲା, ତେଣୁ ମନ ଦୁଃଖ କରି ଚାକିରି ଛାଡ଼ି, ଘରଛାଡ଼ି କୁଆଡ଼େ ଫେରାର୍ ହୋଇ ଯାଇଛନ୍ତି ।

ଶଙ୍କର—ତାଙ୍କଭଳି ବୁଝିଲା ଶୁଝିଲା ଲୋକ ହୋଇ···

ଯୋଗେଶ—ଆରେ ବୁଝିବ କଣ ? ସ୍ତ୍ରୀ ପାଦର ଯୋତା, ସ୍ତ୍ରୀ

ମରିପିବା ଘୋଡା ଛୁଣ୍ଟିଗିବା ଭିତରେ ପ୍ରଭେଦ କରୁନାହିଁ !
ତେଣୁ ଘୋଡା ଛୁଣ୍ଟିଗଲେ ପାଦ ପାଇଁ ନୂଆ ଘୋଡାଟେ
କିଣିଆଣିବା ଗୋଟେ ସାଧାରଣ କଥା । ଏଥିରେ ରାଗିବା
ବା ଦୁଃଖ କରିବା ଲାଭ କ'ଣ ? ଯାଉ, ଯିଏ ଯାହା କରିବ···

ଶଙ୍କର—ହଁ ହଁ ସିଏ ତାହା ପାଇବ ।

ଯୋଗେଶ -( ଦୀର୍ଘଶ୍ୱାସ ଛାଡି ) ହଉ ତୁ ଯା, ମୁଁ ଟିକିଏ
ରଘୁ ମିଶ୍ରଙ୍କ ଘରୁ ଆସେ ।

ଶଙ୍କର ନାଇଁ · ଆଜ୍ଞା ! ···ଏମିତ···ହଉ ଜାହାର ଆଜ୍ଞା !

ଯୋଗେଶ— ହଁ, ଯା ! ( ଶଙ୍କର ଚାଲିଗଲା, ଯୋଗେଶ ଫେର
ପଢୁଥିଲେ, ଆସିଛନ୍ତି ସୁବୋଧ ଓ ପଦ୍ମା, ୭ ବର୍ଷର ବାଳକ )

ଯୋଗେଶ—( ଖୁସିରେ ) କରେ ପଦ୍ମୀ ! ସୁବୋଧ ! ସୁରେଶ
କାହିଁ ? ସୁରେଶ ! ( ଏଣେ ତେଣେ ଖୋଜିଲେ ) କରେ
ସୁବୋଧ ! ସୁରେଶ କାହିଁ ? ( ସୁବୋଧର ନୀରବତାକୁ ସହି
ନ ପାରି ) ଚୁପ୍ ରହୁଛୁ ଯେ ! କଣ ହୋଇଛି କହ ?

ସୁବୋଧ—ଭାଇ ଫେରାର୍

ଯୋଗେଶ—ଫେରାର୍ !

ସୁବୋଧ—ହଁ, ଦଦ ପାଖରେ ପଦ୍ମୀକୁ ଛାଡ଼ି କୁଆଡ଼େ ପଳେଇ-
ଛନ୍ତି । ବହୁତ ଖୋଜା ଖୋଜ ପରେ ବ କୌଣସି ପତ୍ତା
ମିଳୁନି । ତାଙ୍କ ନାମରେ ପୋଲିସର warrant ବୁଲୁଛି ।

ଯୋଗେଶ—କଣ ହେଲା ? ସୁରେଶ କଣ··· ! ମୁଁ ଯେ ଜବାବ
ଦେଇସାରିଛି ।

ମିଶ୍ର—( ଇନ୍ଦ୍ରଜିତଙ୍କୁ ନେଇ ଆସିଛନ୍ତି ) ଜବାବ କଣ ?
ଲଗ୍ନତ ସ୍ଥିର ହୋଇସାରିଛି ।

ଯୋଗେଶ—କଣ କରିବା ମିଶ୍ରେ ! ସୁରେଶ ଫେରାର୍ ।

ମିଶ୍ର—ମୁଁ ଶୁଣିଛି, କିନ୍ତୁ···ମୁଁ ମନା କରି ଦଅନ୍ତୁ ଯେ···କେବଳ ଆପଣଙ୍କ ଜବାବଟା ଖଟିଯିବ ··· ସେଇଟା ମୋତେ ବାଧୁଛି···ନହେଲେ·· ନା କଣ ବାପା ! ( ସୁବୋଧଙ୍କୁ )

ଯୋଗେଶ—ନା ନା, ମୁଁ ଯିବି, ସୁରେଶଙ୍କୁ ଖୋଜି ବାହାର କରିବାକୁ ପଡ଼ିବ ।

ମିଶ୍ର—ଅତି ଉତ୍ତମ କଥା କହନ୍ତା ଆଜ୍ଞା !

ଯୋଗେଶ—( ଇନ୍ଦ୍ରଜିତଙ୍କୁ ଦେଖି ) ଏ ବାବୁ·· ?

ମିଶ୍ର—ଇନ୍ଦ୍ରଜିତ ମହାନ୍ତି, ଲକ୍ଷପତି ଆଜ୍ଞା ! ନଈ ସେପଟରେ ଗୋଟେ କାରଖାନା ବସେଇବେ, ସେଇଥିପାଇଁ···

ଇନ୍ଦ୍ର—ଆପଣଙ୍କ Help ଆଶାରେ···

ଯୋଗେଶ—ତାହାଙ୍କୁ ନିଶ୍ଚୟ କରିବୁ ।

ମିଶ୍ର—ମୁଁ ପ୍ରତୀକ୍ଷା କରିବ ।

ଯୋଗେଶ—କେମ ?

ମିଶ୍ର—ଆଜି କ'ଣ ବ୍ରାହ୍ମଣ ଅଛନ୍ତି ? ଏଗୁଡ଼ା କୁକୁଡ଼ା ମଦ ଖାଇ ଫସଲ ହୋଇଗଲେଣି ( ସମସ୍ତେ ହସିଲେ )

ଯୋଗେଶ—ମିଶ୍ରେ ! ଠିକଏ କଥା ଥିଲା···

ମିଶ୍ର—ହେଃ ହେଃ କ'ଣ ଗୁପତରେ ?

ଯୋଗେଶ ଆସ ( ସମସ୍ତେ ଚାଲିଗଲେ, ଅନ୍ଧାର )



## ॥ ନବମ ଦୃଶ୍ୟ ॥

ଠନ୍ ଠନ୍ କର ପାଖ ଗୀର୍ଜାରୁ ୮ଟା ବାଜି-ବାର ସୂଚନା ମିଳିବା ମାତ୍ରେ ଦୂର ମସ୍‌ଜିଦ୍‌ରୁ "ଆଲ୍ଲା ହୋ ଅକ୍‌ବର୍" ଧ୍ୱନିରେ ଦୁନିଆର ପ୍ରତ୍ୟେକ ଜୀବନର କାନ ଥରି ଉଠିଲା । କୁଆ, କୁକୁଡ଼ା, କୁମ୍ଭାଟୁଆଙ୍କର ଲୁଷା ବନ୍ଦନା ଭିତରେ କିଏ ବଳେ ପୁଅଟିଏ ମିଶି ଗଙ୍ଗାଧର ମେହେରଙ୍କର "ମଙ୍ଗଳେ ଅଇଲେ ଜଷା " ଛାନ୍ଦଟିକୁ ଉଚ୍ଚସ୍ୱର ଗଳାରେ ଗାଇ ଉଠିଲେ । ଦୂର ମନ୍ଦିରରୁ ଘଣ୍ଟା ଶୁଭୁଥାଏ କବାଟ ଖୋଲିଗଲା .... ସାବଜୀ ଧଶ ଧଶ–ବାହାରକୁ ଚାଲିଗଲେ । କିଛି ସମୟ ପରେ ଲତା ବାହାରୁ ଆସିଲା ହାତରେ ଫୁଲଡ଼ାଲା ଧରି, ମିଶ୍ରଙ୍କ ସହିତ କଥାଭାଷା ହୋଇ ।

ମିଶ୍ର—କିଏ ଜାଣିଥିଲା···, ଜମାଦାର ଘର ଅବସ୍ଥା ଫେର ଇମିତ ହୋଇଯିବ ।

ଲତା– କ'ଣ କରିବା ? ଅବସ୍ଥା ତ···( ଆସନ ଦେଲା )

ମିଶ୍ର—ନିଜ ଗୁଣରୁ ଏମିତ ହେଉଛି । ଆରେ, ଆମେତ କିଛି ପର ଅପର ଲୋକ ନୋହୁଁ, ସବେ କହୁଥିଲେ କ'ଣ ମାନହାନି ହୋଇଯାଇଥା'ନ୍ତା ?

ଲତା—ମଉସା ! କପୂର ପିନା ଉଡ଼ିଯାଉଛି···ହେଲେ କନା ଖଣ୍ଡି କିନ୍ତୁ···

ମିଶ୍ର—ଉଡ଼େଇ ଦେଲେ ଛପରରୁ ନଡ଼ାବି ଉଡ଼ିଯିବ···, ହଁ, ତୁ ବ୍ୟବସ୍ଥା କରିବୁ ?

ଲତା—କୋଉଠି ମଉସା ! ମୋ ପାଇଁ ଏତିକ ଠିକ୍ କରିଦିଅ ।

ମିଶ୍ର—ଆରେ, ତୁ ବ୍ୟସ୍ତ ହେଉଛୁ କାହିଁକ ? ତୁ ହଁ ଭରିଲେ ଭାଲ
    ସ୍ବକସୀ । ମୁଁ ସବୁ ବନ୍ଦୋବସ୍ତ କରି ରଖିଛି । ଖାଲି ତୋ
    ହାତରେ ଅସଲ କଥାଟା ।

ଲତା—ମୁଁ କଷ୍ଟସ୍ବ ସ୍ବକସୀ କରିବ ମଉସା !

ମିଶ୍ର—ବେଶୀ ଦୂର ନୁହେଁ ଯେ···ଏଇ ନଈ ସେପଟରେ
    ଗୋଟେ ଚଷମା କାରଖାନା । ଖାଲି ହିସାବ କତାବ
    କରିବା କଥା, ତୁତ ବେଶ୍ ପାଠ ପଢ଼ିଛୁ । ତୁ କ'ଣ
    ପାରିବୁନ ?

ଲତା—ହଁ ମଉସା ! ମୁଠେ ଭାତ ପାଇଁ ମୁଁ ସବୁ ପାରିବ ।

ମିଶ୍ର—ହେଃ ହେଃ ହେଃ ( ଭିତରୁ ଆସିଛନ୍ତି ଶିଶିର )

ଶିଶିର—ନା, ଲତା ଯିବନ ।

ଲତା—ଭାଇ !

ଶିଶିର—ମୁଁ କରିବ ସେ ସ୍ବକସୀ ।

ମିଶ୍ର—ହେଃ ହେଃ, ବାପ ! ଆଜକାଲି ଯୁଗତ ଜାଣୁ । ଝିଅଙ୍କୁ
    ଆଗ ଶୃକସୀ···ତେଣୁ ତୁମ ଘରର ଯୋଉ ଅବସ୍ଥା···
    ସେଥିପାଇଁ ଲତାର ଗୃକସୀ ନହାତି ଜରୁରୀ···ହେଃ ହେଃ

ଶିଶିର—ମଉସା ! ଜମାଦାର ଘର କାନ୍ଥରୁ ଚୂନର ଧଳା
    ରଙ୍ଗଟା ଧୋଇ ଗଲେବ ସିମେଣ୍ଟ ଲେଖ ଇଟା ଗୁଡ଼ାକ
    ଭୁସୁଡ଼ି ପଡ଼ନ ।

ମିଶ୍ର—ହରିହେ, ରାଧେ ଗୋବନ୍ଦ, ସ୍ପେ କ କଥା ।

ଶିଶିର—ଲତାର ଗୃକସୀ କରିବା ଦରକାର ନାହିଁ ।

ଲତା—ଭାଇ !

ଶିଶିର—ଆପଣ ଯାଇପାରନ୍ତି ।

ମିଶ୍ର—ଏଁ ! ଏଁ ! ବଡ଼ା ଘରକୁ ଗୋଡରେ ଆଡ଼େଇ ଦଉଛନ୍ତି

ହୋ ! କରେ ବୁଝି ବର୍ତ୍ତର ନାମ କର ଜୀବନରେ ସୁଯୋଗ ଥରେ ଆସେ ।

ଶିଶିର— ଆପଣଙ୍କର ସୁଯୋଗଟା ହୁଏତ ଆମପାଇଁ ଦୁର୍ଯୋଗ ହୋଇ ପାରିଥାଏ । ତେଣୁ ଆପଣ ଅଯଥାରେ-

ମିଶ୍ର - ଭଲକଥା, ହଉଦେ ବଢେ ଗୋବନ୍ଦ ! ଆମର କ'ଣ ଜାମନାହିଁ ? ଖାଲି ତୁମର ଭଲ ପାଇଁ ମିନା, ନ ହେଲେ ମୋର ଦରକାର କଣ ? ହଉ, ଚଳାବର, ଯଉ ଭଲ ଲାଗବ, ମୋତେ କହିବ, ମୁଁ ଚେଷ୍ଟା କରିବ । ହେଃ ହେଃ ( ଚାଲିଗଲେ )

ଲତା — କାହିଁକି ତାଙ୍କୁ ଫେରେଇ ଦେଲ ?

ଶିଶିର ମୁଁ ଯାହା କରୁଛି ଠିକ୍ କରୁଛି ।

ଲତା— ଜପବାପରେ ଜୁଡ୍ ବୁଡ୍ ହୋଇ ଆଦର୍ଶର ଲଢ଼କୁ ପିଇବା କ'ଣ ଠିକ୍ ?

ଶିଶିର-ଲୋକର ନିଆଁରେ ଜଳଯା, ଦୁଃଖ ନାହିଁ, କିନ୍ତୁ ଇଜ୍ଜତ ପାଇଁ ତୋତେ ବଂଶ ରଖିବାକୁ ପଡ଼ିବ ।

ଲତା କାହିଁକି ? ପେଟର ନିଆଁକୁ ଲିଭାଇ ଦେବାପାଇଁ ମଣିଷ ପର ତାର ସର୍ବସ୍ୱକୁ ପୋଡ଼ି ଦେଇପାରେ ।

ଶିଶିର – ଯେଉଁ ନିଆଁରେ ସାର ଖାନଦାନର ମୁଦ ପୋଡ଼ିଯାଏ ସେଇ ନିଆଁରେ ଦୀପ ଜାଳି ତୁ କ'ଣ ଆମ ଭବିଷ୍ୟତକୁ ଆଲୋକିତ କରିପାରିବୁ ?

ଲତା— କାହିଁକି ପାରିବନି ? ତୁମେ ପରା କହୁଥିଲ...

ଶିଶିର — ତା' ବୋଲି ମୁଠେ ଭାତ ପାଇଁ...

ଲତା - ଭଙ୍ଗା ଘରର ଆଲମାରି ଭିତରେ ଥିବା ଲୁଗାକୁ

ନସପଦରେ ଯାଇଛ ଦୁଏନା ଶୁଣ !

ଶିଶିର—ଚୁପ୍‌କର ! ( ଶୃପୁଡ଼ାଏ ପିଟିଲେ ) ମୁଠେ ଭାତ ପାଇଁ ତୁ ସାବ ବଂଶର ଇଜ୍ଜତ ମାଟିରେ ମିଶେଇ ଦେବାକୁ ବସିଛୁ !

ଲତା—( ଆଖିର ଲୁହକୁ କଉଁରେ ଆଡ଼େଇ ଦେଇ ) ଶୃଡ଼ୋ ମାର ଧମକ ଦେଇ ପେଟର ଚିତ୍କାରକୁ ବନ୍ଦ କରି ହେବନି । ପେଟପାଇଁ ଭାତ ଦରକାର ଉପବାସ ପରେ ପେଟର ଯନ୍ତ୍ରଣା ମୁଁ ଆଉ ସହ୍ୟ ପାରୁନି । ମନେଇ ଖାଇବାକୁ ଦିଅ ! ମୋତେ ମୁଠେ ଭାତ ଦିଅ !

ଶିଶିର—ଖାଇବୁ ? ନେ' ଖା ! ( ପକେଟରୁ ବିଷ ଶିଶି ବାହାର କରି ଦେଲେ ) ଜୀବନର ହବୁଟକ କ୍ଷୁଧା ଏଇଥିରେ ଲିଭିଯିବ ।

ଲତା—ବିଷ··· ! ! ! ( ବାହାରୁ ଅସିଲନ୍ତି ସାବତ୍ରୀ, ମୁଠାଏ ଶାଗ ଧରି )

ସାବତ୍ରୀ—( ବିଷ ଦେଖି ଉତ୍କଣ୍ଠିତ ହୋଇ ) ଲକ୍ଷ୍ମୀ ନାହିଁ ତୋତେ !

ଲତା ଓ ଶିଶିର—ବୋଉ ! !

ସାବତ୍ରୀ—ତୋତେ ଜନ୍ମ ଦେଇଥିଲି କ'ଣ ତୋ ହାତରୁ ବିଷ ଖାଇବା ପାଇଁ ! ( ଶାଗ ଢାଳି ) ବାପ ଯେମିତି ଜଳେଇ ଜଳେଇ ଜେଲରେ ନିଶ୍ଚିହ୍ନ ହୋଇଗଲେ । ଅଉ ପୁଅ, କଣ ନା ବିଷ ଆଣି ମାରିବାକୁ ଦେଉଛି ।

ଶିଶିର—ମୁଁ ଆଉ କ'ଣ କରିବି, ବୋଉ !

ସାବତ୍ରୀ—କାହିଁକି ? ଦେହରେ କଣ ବଳନାହିଁ ରିକସା ଟାଣିବାକୁ ? ଯାଉନୁ କୁଲି ଖଟିବୁ ! କିଛି ନ ହେଲେ ଭିକ୍ଷ କରୁନୁ !

ଲତା—( ଶିଶିର ଆହତ ହେଲେ ) ବୋଉ ! ଆମେ କଣ ଉପାସରେ ମରିଯାଉଛୁ ?

ସାବିତ୍ରୀ—ତୁ ଚୁପ୍ କର !

ଲତା—ଘର ଭରସା ଟାଣିବେ; ତୁ ଭାତ ଖାଇବୁ ?

ସାବିତ୍ରୀ—ଟାଣୁ ଭରସା, କାହିଁକି ସେ ମନାକଲା ତୋତେ ଚାକିରି କରିବାକୁ ?

ଶିଶିର—ବୋଉ ! ଲତା ଚାକିରି କଲେ ଆମ ବଂଶର ଇଜ୍ଜତ ରହିବତ ?

ସାବିତ୍ରୀ—ଖାଇବାକୁ ପିନ୍ଧିବାକୁ ନ ଦେଇ ଏତେ ଝିଅଟାକୁ ଘରେ ରଖିଛ, ତୁମ ବଂଶର ଇଜ୍ଜତ ରହୁଛି ତ !

ଶିଶିର—ତଥାପି···ଲତା ଚାକିରି କରି ପାରିବନି !

ସାବିତ୍ରୀ—ତୁ ଏ ଘରର ମୁରବି ନୁହଁ, ମୁଁ କହୁଛି ସେ ଚାକିରି କରିବ ।

ଶିଶିର—ଲତା ଯଦି ଚାକିରି କରିବ, ମୁଁ ଏ ଘରୁ ଚାଲିଯିବି !

ଲତା—ଭାଇ ! ତୁମେ କାହିଁକି ଏମିତି ଅବୁଝା ହେଉଛ ? ସାରା ବଂଶର ଇଜ୍ଜତ ଚାଲିଗଲେ ମୁଁ କଣ ସୁଖୀ ହୋଇ ପାରିବି ?

ଶିଶିର—ଲୋକଙ୍କ ଗଞ୍ଜଣାସବୁ ସହି ପାରିବୁତ ?

ମିଶ୍ର—( ପ୍ରବେଶ ) ହେଃ ହେଃ, ହାତୀ ଚାଲିଥାଏ, କୁତା ଭୁକୁଥାଏ, ହାତୀ କଣ କିଛି ଶୁଣେ ?

ସାବିତ୍ରୀ—ସେଇ କଥା ଟିକିଏ ବୁଝେଇ ଦିଅ ।

ମିଶ୍ର—ଆରେ କହିବା ଲୋକତ ଢେର, ବୋହିବା ଲୋକ କେତେ ଜଣ ?

ସାବିତ୍ରୀ—କିଛି ନହେଲେ ନିଜ ବାହାଘରଟା ତ···

ମିଶ୍ର—ଦେଃ ଦେଃ, ପଇସା କ କାମରେ ନ ଲାଗିବ ।
ଶିଶିର—ଠିକ୍ ଅଛୁ, ସମସ୍ତଙ୍କର ଯଦି ଇଚ୍ଛା, ମୁଁ କାହିଁକି ମନାକରିବ ?
ମିଶ୍ର—ହରିଦେ ସଧେ ଗୋବିନ୍ଦ, ତାହାଲେ ମା ବାହାଘରପଡ଼...
କେତେ ବାଟଯେ, ଏ ନଈ ସେପଟରେ ତ ..
ଲତା—ବୋଉ ! ( ଅନୁମତି ସ୍ୱହିଁଲା )
ସାବିତ୍ରୀ—ଚାଲ, ମୁଁ ବି ତୋ ସଙ୍ଗରେ ଯିବି ।
ମିଶ୍ର—ମଲା, ତୁମକୁ କିଏ ନାଇଁ କରୁଛି ଯେ–ଆସ ( ଚାଲିଗଲେ )
ସାବିତ୍ରୀ—ଆ ଲତା ! ତୁ ଶିଶିର ସଙ୍ଗେ ଥିବୁ । ( ଚାଲିଲେ )
ଲତା - ଭାଇ ! ମୁଁ ତୁମକୁ କୌଣସି ଅସୁବିଧାରେ ପକେଇବିନି ।
ଶିଶିର—ନା, ତୁ ଯା ! ମୋତେ ଟିକିଏ ଭାବିବାକୁ ଦେ ।
( ଲତା ଚାଲିଗଲା । ଶିଶିର ତା ଯିବା ବାଟକୁ ଚାହିଁ କିଛି ଭାବିଗଲେ, ଆଗକୁ ଯାଉଥିଲେ, ପୁଣି କିଛି ଭାବି ପଛକୁ ଫେରିଲେ ) ଠିକ୍ କଥା, ଦେହରେ ତ ମୋର ଯୁବକର ବଳ ଅଛି ।
ସାବିତ୍ରୀ—(Voice) ତୋତେ ଜନ୍ମ ଦେଇଥିଲି, କ'ଣ ତୋ ହାତରୁ ବିଷ ଖାଇବା ପାଇଁ ? ଦେହରେ କଣ ବଳ ନାହିଁ ରିକ୍ସା ଟାଣିବାକୁ ? ଯାଉନୁ ହଳ କରିବୁ, କିଛି ନହେଲେ ଷ୍ଟେସନକୁ ! ଗ୍ରେଶରକୁ ! ରେଳକୁ !
( ବିବ୍ରତ ହୋଇ ପଡ଼ିଲେ )
ଲତା—(Voice) ଉଙ୍ଗା କାଚର ଆଲମାରି ଭିତରେ ସାଇ ଲୀଳାକୁ ନଗ୍ନପଦରେ ସାଇତି ହୁଏନା ଭାଇ ?
ମିଶ୍ର—ଦେଃ ଦେଃ, ପଇସା କ କାମରେ ନ ଲାଗିବ !
( ଶିଶିର ବିବ୍ରତ କରୁ ଭାବିଛନ୍ତି, ହାତର ବିଷ ଶିଶିକୁ

ଶିଶିର—ଠିକଅଛୁ, ସମସ୍ତଙ୍କର ଯନ୍ତ୍ର ନେଃ୍ଖା, ମୁଁ ଜାଣିକ ମନାକରିବୁ ?

ମିଶ୍ର – ହରିବେ ବଧେ ଗୋବନ୍ଦ, ତାହାଲେ ମା ବାହାରିପଡ଼ୁ... ଲେଢେବାଟଯେ ଏ ନଣ୍ଡ ସେ ପଟରେ ଭ...

ଲତା—ବୋଉ ! ( ଅନୁମତି ଗ୍ରହିଁଲା )

ସାବଣୀ— ଚ୍ଳଲ, ମୁଁ ବ ତୋ ପଛତ ଯିବ ।

ମିଶ୍ର— ମଲା, ତୁମକୁ କିଏ ନାହିଁ କରୁଛୁ ଯେ, ଆସ ( ଚ୍ଳଲଗଲେ )

ସାବଣୀ—ଆ ଲତା ! ତୁ ଶିଶିର ଘରେ ଥିବୁ ( ଚ୍ଳଲେ )

ଲତା—ଭଲ ! ମୁଁ ତୁମକୁ କୌଣସି ଅସୁବିଧାରେ ପକେଇବନ ।

ଶିଶିର - ନା!, ତୁ ଯା ! ମୋତେ ଟିକଏ ଘବବାକୁ ଦେ ।

( ଲତା ଚ୍ଳଲଗଲା, ଶିଶିର ତା ଯିବାବାଟକୁ ଗ୍ଳହିଁ କଣ ଭବଗଲେ, ଆଗକୁ ଯାଉଥିଲେ, ପୁଣି ଭଣ ଭବ ପଛକୁ ଫେଇଲେ ) ଠିକ୍ କଥା, ଦେହରେତ ମୋର ଯୁବକର ବଳଅଛୁ ।

ସାବଣୀ—( Voice ) ତୋତେ ଜନ୍ମ ଦେଇଥିଲି, କ'ଣ ତୋ ହାତରୁ ବିଷ ଖାଇବା ପାଇଁ ? ଦେହରେ କଣ ବଳ ନାହିଁ ଭିକ୍ଷା ଟାଣିବାକୁ ? ଯାଉନୁ ହଳ କରିବୁ, କଛି ନ ହେଲେ ଗ୍ଳେଵ କରୁନୁ ! ଗ୍ଳେଵ କରୁନୁ ! ଗ୍ଳେଵ କରୁନୁ ! (ବଭ୍ରତ ହୋଇ ପଡ଼ିଲେ)

ଲତା—( Voice ) ଇଙ୍କା ତାଚର ଆଲମାସ୍ତ ଭିତରେ ସ୍ଥାପ ମିଳାକୁ ନସ୍ପଦରେ ସାଇତ ହୁଏନା ଭଲ !

ମିଶ୍ର—( Voice ) ଦେଃ ଦେଃ ପଇସା କ କାମରେ ନ ଲାଗିବ !

( ଶିଶିର ବହୁତ କଛି ଭବଛନ୍ତି, ହାତର ଡ୍ରପଶିଶିକୁ ଦେଖିଛନ୍ତି,

ଏହି ସମୟରେ ହଠାତ୍ ଶୁଣାଯାଏ "ବେକାର" "ବେକାର" ଧ୍ୱନିସହ ଝଲକାଏ ହସ ଶିଶିରକୁ ସେ ହାଇ ନେଇଗଲା ଘର ଭିତରକୁ । ଶିଶିର ଭିତରେ ଥାଇ କବାଟ ବନ୍ଦ କରିଦେଲେ ।

ଅଂଧାର

—

●



## ଦ୍ୱିତୀୟାଙ୍କ ପ୍ରଥମ ଦୃଶ୍ୟ

ଜମାଦାର ଘର, ସାଜସଜ୍ଜାରୁ ସ୍ପଷ୍ଟ ଅନୁମାନ କରି ହେବନି, ବର୍ତ୍ତମାନ ପରିସ୍ଥିତିରେ ଘରର ଅବସ୍ଥା ବେଶ ସନ୍ତୋଷ ଜନକ । ଆଲୁଅ ଜଳିଲା ବେଳକୁ ଦେଖାଗଲାଯେ, ସାବିତ୍ରୀ ଓ ଲତା କଥା ହେଉଥାଆନ୍ତି ।

ଲତା – ବୋଉ ! ବାପା ଜେଲ୍‌ରେ ବସି ନିଶ୍ଚୟ କାନ୍ଦୁଥିବେ ।

ସାବିତ୍ରୀ – କ'ଣ ଆଉ କରିପାରିବୁ ? ତାଙ୍କ ଭାଗ୍ୟ ମନ୍ଦ ।

ଲତା – ତଥାପି, Sir ତ ଏତେ ଚେଷ୍ଟା କଲେ ।

ସାବିତ୍ରୀ – ତାଙ୍କ କଥା ପୁଣି କହୁଛୁ ? ଆମର ଅନ୍ନଦାତା ଭଗବାନ ସେ ।

ଲତା – ଆଜି ଆସିବେ ବୋଲି ତ କହିଛନ୍ତି ।

ସାବିତ୍ରୀ – ତୁ ଅନ୍ୟାନ୍ୟ ବନ୍ଦୋବସ୍ତ କରିପକା, ମୁଁ ଗାଁରୁ ପିଲମାନଙ୍କୁ ଡ଼ାକିଦିଏଁ ।

ଲତା – ହଁ ହଉ ! Sir କହୁଥିଲେ ତୋପାଇଁ ଗୋଟେ ସୁନ୍ଦର ଚଷମା ଆମ Factoryରେ ତିଆରି କରିଦେବେ ।

ସାବଣୀ—ଆଲେ, ଭୂତ ମୋ ଚଷମା, ପୂଅଟା ସିନା···ଗ୍ଲଡ଼୍, ବୁ ଟିକଏ ସବୁ ଠିକ୍ ଠାକ୍ କରଦେ, ମୁଁ ଆସେ

ଲତା—ଶିଘ୍ର ଆସିବୁ, ( ମନେ ପକାଇ ) ଆଲେ ମୋ ଷିଗ୍ଧ !
( ଭିତରକୁ ଗଲ )

ସାବଣୀ—ଯାହାହେଉ, ଝିଅଟାତ ମୂଠେ ଖାଇବାକୁ ଦେଇ ପାରୁଛି ( ଏହି ସମୟରେ ଆସିଛନ୍ତି ସୁବୋଧ ଓ ଚପୀ )

ସୁବୋଧ—କରେ ସୁବୋଧ ! ଚପୀ ଆସିଛି ?

ଚପୀ—( ସୁବୋଧଙ୍କୁ ଇସାର ଦେଇ ) ନା, ସେ ଅସିବନ ମନାକଲ ।

ସାବଣୀ—( ଖସିରେ ) ମନାକଲ ? ହଁ ସେ ରଜାପୁଅ··· ଏ ବୁଢ଼ିଆରେ···

ଚପୀ—( ହସି ଠକଗଲ ଅଣ !

ସାବଣୀ—ହଉ, ଥାଉ, ଅଜ ଠକାନା, ଆଲେ ସୁବୋଧ ବସ ଘରେ ଲତା ଅଛି, ମୁଁ ଟିକଏ ସାହିରୁ ଆସୁଛି ।

ସୁବୋଧ—ନାଇଁ·· ମୁଁ ଗ୍ଲଲଯିବ ··

ସାବଣୀ—ଗ୍ଲଲଯିବ ? ଏଇଟା ଗୋଟେ କଥା ? ଲତା ! ସୁବୋଧ ଆସିଛନ୍ତି, ଆ ଚପୀ ଯିବା, ସୁବୋଧ ଥିବ, ମୁଁ ଅସୁଛି

ଚପୀ—ମୁଁ ବ ଆସୁଛି କାକା ( ଚପୀ ସାବଣୀ ଗ୍ଲଲଗଲେ, ଭିତରୁ ଆସିଛି ଲତା )

ଲତା—( ସୁବୋଧ ଆସିବା ବିଶ୍ୱାସ କର ପାରନ ସୁବୋଧଭାଇ !

ସୁବୋଧ—ଆଶ୍ଚର୍ଯ୍ୟ ହଉଛୁ, ନୁହେଁ ?

ଲତା—ନା··· ·· ଆଜ ·· ···?

ସୁବୋଧ – ତୋର ଜନ୍ମଦିନ, କାଲି କାଲି Evening ?

ଲତା—ଇସ ! କି କଥା !

ସୁବୋଧ—ଆମ ବାହାଘର ଦିନ ଯଦି ଏମିତି ବର୍ଷା ହୁଏ ?

ଲତା—ଛତା ଧରିବା ।

ସୁବୋଧ—ପବନରେ ଯଦି ଉଡ଼ିଯାଏ ?

ଲତା—ଭିଜିଯିବା ।

ସୁବୋଧ—ଚାଲରେ ?

ଲତା—ହଜିଯିବା ।

ସୁବୋଧ—ପୋଲିସ ଯଦି follow କରେ ?

ଲତା—ହତାଶ ହେବ ।

ସୁବୋଧ—Thanks

ଲତା—Interview ସକାଳ ?

ସୁବୋଧ—ହଁ ଲତା ! ତୁ ଯେଉଁ ଗଛଟା ଦେଇଥିଲୁ .

ଲତା—କଣ, ଫୁଟିଛି ? ( ଯାଚେଇଲେ )

ସୁବୋଧ—ଦେଖନ୍ତୁ, ( ଟୋପିପ ) ଖୁବ ଲାଲ ହୋଇଛି ନୁହେଁ ?

ଲତା—( ଦେଖି ) କାଳି ମଉଳି ଯିବଯେ···!

ସୁବୋଧ—ନା ନା, ଏଇଠି ରହିଲେ ସୁନ୍ଦର ଦିଶିବ,

( ଲତାର ଗଣ୍ଡରେ ଖୋସିଲେ )

ଲତା—ଆହୁରି ସୁନ୍ଦର ଦିଶିବ । ଯଦି ଏଇଠି ରହେ,

( କୋଟ ପକେଟରେ ରଖିଲେ )

ସୁବୋଧ—ଅନେକ ଗୋଲାପଠାରୁ ଫୁଟନ୍ତା ଗୋଲାପଟା ଅଧିକ ସୁନ୍ଦର ଦିଶନ୍ତା, ଯଦି ସେ ନଜେ ରହନ୍ତା ।

ଲତା—ଏଇଠି ଭାବ ସବୁଙ୍କୁ ଅଜାଡ଼ି ଦିଅନ୍ତା ଯଦି ସେ ସୁଯୋଗ ପାଆନ୍ତା ।

ସୁବୋଧ— ସେ୍ କ’ଣ ଗୋଟିଏର ମନ କଥା ?

ଲତା—ସେ୍ ବ କ’ଣ ସବୁ Interviewର ଶେଷକଥା ?

( ଉଭସେ୍ ହସି ଉଠିଲେ )

ସୁବୋଧ—ହଁ, ଲତା ! ଆଜ ତୋର ଜନ୍ମଦିନରେ ଗୋଟେ ସୁନ୍ଦର ଉପହାର ଦେବ ।

ଲତା—କ’ଣ, ତାଜମହଲ ?

ସୁବୋଧ—ନା, ତା’ର ଏକ ନର୍ଜୀବ ପ୍ରତିକୃତି ।

ଲତା—କାଚରେ ନା କାଗଜରେ ?

ସୁବୋଧ ମୋ ମନର ଇନ୍ଦ୍ରଜାଲରେ-

ଲତା—ସଚେ ! କନ୍ତୁ······

ସୁବୋଧ - Just a minute. (ଖୁଲଯାଉଥିଲେ )

ଲତା—ଶୀଘ୍ର !

ସୁବୋଧ—Possitively (ଚାଲିଗଲେ)

ଲତା—ତା ··· ଜ ··· ମ ··· ହ ··· ଲ । (ମନେମନେହସି)

କେତେଦନ··· ? ( ମୋଟର ଖାଇଲେ ଶବ୍ଦରେ ଚମକ ଉଠିଲ, କଏ ଅସୁଥିବାର ଦେଖି, ବ୍ୟସ୍ତରେ ଚେୟାର ସଜାଡ଼ ଦେଲ ବୋଉ ! ବୋଉ କୁଆଡ଼େ ଯେ ଚାଲିଯିବ, ମୁଁ ଏଇନେ କଣ କରିବ ? ( ପଶି ଆସିଲେ ଇନ୍ଦ୍ରଜିତ )

ଇନ୍ଦ୍ର—Hallow Lata ! Happy birthday to you.

ଲତା—( ସଂପୂର୍ଣ୍ଣ ଅପ୍ରସ୍ତୁତ ହୋଇ ) Sir·· ନମସ୍କାର Sir ।

ଇନ୍ଦ୍ର—( ହସି ) Don't worry.

ଲତା—( ଚେୟାର ଦେଇ ) ଆଇଁ Sir, ବସନ୍ତୁ !

ଇନ୍ଦ୍ର—Thanks. ( ବସିଲେ ) ହଁ ଲତା ! ଦେଖିଲ ମୋ Choiceଟା କେମିତ ? ( ମୁଦ ଦେଖାଇ ) It has an artistic value.

ଲତା—ବାସ୍ତବରେ ଶିଳ୍ପୀର ସୃଷ୍ଟିସବୁ ମୂଲ୍ୟର ବାଛନ୍ତରେ ମାପି ହେବନ ।

ଇନ୍ଦ୍ର—( ପିନ୍ଧାଇବାକୁ ଉଦ୍ୟତ ) Excellant idea. ଠିକ୍ ଏମିତ ଏକ Perfect answer ତୁମଠୁ ଆଶା କରୁଯାଏ ।

ଲତା - ( Avoid କରିବାକୁ ଯାଇ ) ବଞ୍ଚନ୍ତୁ ନାହିଁ, ପିନ୍ଧନେଇ ।

ଇନ୍ଦ୍ର—ପିନ୍ଧେଇ ଦେଲେ କ'ଣ ହାତ ଥରି ଉଠିବ ? ( ଲତା ଇତଃସ୍ତତଃ ହୋଇଛୁ ) ଏଇ ମୁଦ ଆମ ଜୀବନରେ ଗୋଟେ ମୀମାଂସା କରିବ । ( ପିନ୍ଧାଇଲେ )

ଲତା—ମୂଲ୍ୟହୀନ ଜୀବନରେ ମୀମାଂସାର ଆଶା କେବଳ ସ୍ୱପ୍ନ ମାତ୍ର ··

ଇନ୍ଦ୍ର—I am sorry, ମୁଁ ଟିକଏ ଅନ୍ୟମନସ୍କ ହୋଇଗଲି, କଥାର flowଟା ବହୁତ ବାଟ ଗ୍ଲଲଗଲା ! Allright, ଆଜର Presentation (ଖୋଲୁଥିଲେ)

ଲତା—Sir ଏ ସବୁ କ'ଣ······

ଇନ୍ଦ୍ର—Don't mind (Necklaceଟିଏ ବାହାରକଲେ )

ଲତା—( ଅଶ୍ଚର୍ଯ୍ୟରେ ) ଯେ ···କ'ଣ ?

ଇନ୍ଦ୍ର—Necklace See, how sweet ! (ପିନ୍ଧାଇବାକୁ ) ଯାଉଥିଲେ ଲତା, ହାତରେ ଧରୁଥିଲ ) ସେ ସ୍ୱାଧିନତା କଣ ମିଳିବନ ?

ଲତା—ପରସ୍ପରକୁ ଜଗିରଖିବା ମଣିଷର ଧର୍ମ ।
( ବାହାନା କପାଇ )

ଇନ୍ଦୁ—ପଉଣ୍ଟିଡକୁ ନଣିତ ସୃଷ୍ଟି କରେ (ଲତାଙ୍କ ଅନଚ୍ଛାସତ୍ତ୍ୱେ ତା ଗଳାରେ Necklaceଟା ଲମ୍ବାଇ ଦେଉଥିଲେ, ଅସିଛନ୍ତି ସୁବୋଧ ଖୁବ୍, ଖୁସୀରେ ଉପହାର ନେଇ, ଏମାନଙ୍କୁ ଏପରି ଅବସ୍ଥାରେ ଦେଖି ତାଙ୍କ ମୁହଁ ହଠାତ୍ କଳା ପଡ଼ଯାଇଛି । ପାଦତଳର ପୃଥିବୀ ଖସି ଯାଉଥାଏ, ସ୍ତବ୍ଧର ଗୋଲାପଟିକୁ ଲୁହ ପୂର୍ଣ୍ଣ ଆଖିରେ ଚାହିଁଛନ୍ତି )

ଇନ୍ଦୁ ଏ Necklace ତୁମକୁ ଅନେକ ସୁନ୍ଦରରେ ହଜେଇ ଦେବ ଲତା !

ସୁବୋଧ—(ହାତରେ ଗୋଲାପଟିକୁ ଦଳି ଚକଚ ପାଦରେ ଗୁଡ଼ିଦେଲେ)

ଇନ୍ଦୁ—( ସୁବୋଧକୁ ଦେଖି ନେଲେ ) ଆରେ ସୁବୋଧ ବାବୁ ଯେ, କେତେବେଳେ...... ?

ସୁବୋଧ—ଅନେକ ବେଳୁ ( ଇନ୍ଦୁଜିତ ଗମ୍ଭୀର ହୋଇ ସିଗାରେଟ ଲଗାଇଲେ ) ଲତା ! Presentation ! ( କାଗଜରେ ବନ୍ଧା ଯାଇଥିବା କାଚ ଭାଜମହଲ ବାହାର କଲେ )

ଇନ୍ଦୁ—Strange ତାଜମହଲ ! ( ହସିଲେ ) No No ଖେଳନା

ଲତା—ଅପରାଧର ନଆଁରେ ମୁହଁଟିକୁ ପୋଡ଼ି ଦଇ ଥାଏ, ଅବଶ ପାଦ ଓ ଶୁଖିଲା ମୁହଁରେ Presentation ନେବା ପାଇଁ ହାତ ବଢ଼ାଇଛି । ଦୁଇ ଜଣଙ୍କ ମଝିରେ ଛିଡ଼ା ହୋଇ ଇନ୍ଦ୍ରଜିତ ସୃଷ୍ଟି କରୁଥାନ୍ତି ଅନେକ ଧୂମକୁଣ୍ଡଳୀ, ଲତା ବସ୍ତ୍ରମ୍ଭିତା ହୋଇ ) ତାଜମହଲ ? ?

ସୁବୋଧ—ହଁ, ( ଦୁଇ ଜଣଙ୍କ ହାତ ମଝିକୁ ଲମ୍ବିଆସିଛି, ଲତା ହାତରେ ମୁଦକୁ ଦେଖି ଝୁକି ଆଙ୍ଗି ପଡ଼ିଛନ୍ତି) ସେ ମୁଦ... ?

( ଲତା ନୀରବ ) ଖୁବ୍ ମୂଲ୍ୟବାନ ଜିନିଷ...! ( ଆଖି ବନ୍ଦ କରି ଉପହାର ଦେଉଛନ୍ତି, ଲତା ଧରିଛି, କିନ୍ତୁ ଉଭୟଙ୍କ ହାତ ଥରି ଉଠିଛି, ଫଳରେ କାଚର ତାଜମହଲଟା ତଳେ ପଡ଼ି ଝଣ ଝାଣ ଚିତ୍କାର କରି ଉଠିଛି, ଇନ୍ଦ୍ରଜିତ ବଙ୍କା ବଙ୍କା ହସ ଓ ସିଗାରେଟ ଧୂଆଁରେ ଉପହାସ କରୁଥା'ନ୍ତି ) ।

ଇନ୍ଦ୍ର—ଆହା ! କେଡ଼େ ସୁନ୍ଦର ତାଜମହଲଟା ଭାଙ୍ଗିଗଲା !

ସୁବୋଧ—( ଏକମୂର୍ତ୍ତି ହୋଇ କ୍ଷିପ୍ର ବେଗରେ ଚାଲିଗଲେ )

ଲତା— ହଠାତ୍ କହି ଉଠିଛି ) ସୁବୋଧ ଭାଇ !

ଇନ୍ଦ୍ର—ଜୀବନର ଯମୁନା ତଟରେ ଅନେକ ତାଜମହଲ ମୁଣ୍ଡ ଟେକନ୍ତି, କିନ୍ତୁ ଭୂକମ୍ପ ଚେଉ ମାଡ଼ରେ ସମସ୍ତେ ଏମିତ ଚୂରମାର ହୋଇଯା'ନ୍ତି ।

ଲତା—ମୁଁ ସହି ପାରୁନି Sir.

ଇନ୍ଦ୍ର—ଅବଶ୍ୟ, ତଥାପି ନିଷ୍ଠୁର ଆଗରେ ଛାତି ଫୁଲାଇ ଠିଆ ହେଲେ, ସେ ବାଟ ଭାଙ୍ଗି ଚାଲିଯାଏ ।

( ଲତା ଅଶ୍ରୁଳ ନୟନରେ ସେ ଭଙ୍ଗା ତାଜମହଲଟିକୁ ଚାହିଁଥାଏ, ପୁଣି କଣ ଭାବି Necklace ଓ ମୁଦି ବାହାରକରି)

ଲତା—ଫେରେଇ ନିଅନ୍ତୁ ଆପଣଙ୍କ ଉପହାର ! ଏହାରି ପାଇଁ ମୋ ତାଜମହଲଟା ଆଜି ଭାଙ୍ଗିଗଲା ।

ଇନ୍ଦ୍ର—କିନ୍ତୁ ସେ କାଚ ତାଜମହଲର ସମାଧି ଉପରେ ମୁଁ ଯେଉଁ ହୀରାର ତାଜମହଲଟିଏ ତୋଳିଦିଏ !

ଲତା—( ଟେବୁଲ ଉପରେ ଉପହାର ରଖି ) ତା ଭିତରେ ମୁଁ କିନ୍ତୁ ପ୍ରତିଷ୍ଠିତ ହୋଇ ପାରିବିନି

( ଭିତରକୁ ଚାଲି ଯାଉଥିଲା )

ଇନ୍ଦ୍ର—ଆ...ଜି ମୁଁ କ'ଣ ତେବେ...ଚାଲିଯିବି ?

ଲତା—( କବାଟକୁ ଧରି କ'ଣ ଭାବିଲା, ହଠାତ୍ କବାଟ ବନ୍ଦ କରିଦେଲା )

ନେତ୍ର—( ଏପରି ଅପମାନ ବୋଧ କରି ଉପହାରଟିକ ନେଇ ) All right. I shall see ( ସିଗାରେଟକୁ ଓଠରେ ଚୁପି ଗାଡ଼ିରେ start ଦେଲେ, ଏହି ସମୟରେ ଆସିଛି ଅମର ଉପହାର ନେଇ )

ଅମର—ସେ କଣ ? ମେଡେଫିଲ ଫାଙ୍କା ! ମୋ ଜୀବନଟା ବି ଫାଙ୍କା

ମୋର ଜୀବନ ଫାଙ୍କା ସସ୍ତା ଗଣ୍ଡା ଗଣ୍ଡା ଛକ
ମୋ ସ୍ୱପ୍ନ ଛିଣ୍ଡା ରେକେଇ ଭର୍ତ୍ତି ଗ୍ରହପୋକ

(ଧୀରେ ଧୀରେ ଅନ୍ଧାର)—



## ॥ ଦ୍ୱିତୀୟ ଦୃଶ୍ୟ ॥

ସେହି ରାସ୍ତାଟା ସେମିତି ଲମ୍ବେଇ ଲମ୍ବେଇ ଦୌଡ଼ୁଛି ନଈ ପର୍ଯ୍ୟନ୍ତ କଥା ଭାଷା ହୋଇ ଆସୁଥିଲେ ମିଶ୍ର ଓ ଯୋଗେଶ—

ମିଶ୍ର—ସୁରେଶ ବାବୁ……ପୁଣି ପୋଲିସ ନଜରରେ… ?

ଯୋଗେଶ—ଆଜି ଦିନକ ଭିତରେ ଗୁଡ଼େଟଙ୍କା ଖର୍ଚ୍ଚ କରି ଜାମିନ ମଞ୍ଜୁର କରେଇଲି କୋର୍ଟରେ ବାବୁ

ମହାତ୍ମାଗାନ୍ଧୀଙ୍କ ଭଳି ସିଧା ସିଧା ମନା କରିଦେଲେ !

ମିଶ୍ର—ସେ ଯେମିତ ବୁଦ୍ଧି ଧରିଲେଣି ଗୃହକର୍ତ୍ତା ଖଣ୍ଡକ ବ...

ଯୋଗେଶ—ଖାଲି କ'ଣ ଗୃହକର୍ତ୍ତା ? ମାନ ଇଜ୍ଜତ ବ ମାଟିରେ ମିଶିଗଲା ।

ମିଶ୍ର—କିନ୍ତୁ ପଟ୍ଟନାୟକେ ? ଏଣେ ବାହାଘର ବନ ଯୋ...ଗ୍ରୀର ହୋଇ ଯାଇଛି ।—

ଯୋଗେଶ—ମୋର କେବଳ ସେତିକ ଚିନ୍ତା ।

ମିଶ୍ର—କଥା ବଅ ସରିଛି ଯେତେବେଳେ

ଯୋଗେଶ—ଏ ପରିସ୍ଥିତିରେ ଆଜ କ'ଣ କରାଯାଇ ପାରେ ?

ମିଶ୍ର—ଆଜଥରେ ଚେଷ୍ଟା କରନ୍ତୁ, ସୁରେଶ ବାବୁଙ୍କୁ...

ଯୋଗେଶ—ମିଶ୍ରେ ! ଯୋଗେଶ ପଟ୍ଟନାୟକ କେବଳ ଗୋଇଠା ମାରିବା ଶିଖିଛି ଗୋଡ଼ ଧରିବା ଜାଣେନା,

ମିଶ୍ର—ହେଃ ହେଃ, ହରିହେ, ସବୁ ଖୋବନ...ତେବେ .. କ'ଣ...

ଯୋଗେଶ—ସୁବୋଧ, ହେଲେ କ'ଣ ଚଳିବନି ?

ମିଶ୍ର—ହେଃ ହେଃ, କ କଥା କହୁଛନ୍ତି ଆଜ୍ଞା ! ଅତ ସୁନ୍ଦର ହେବ, କିନ୍ତୁ...

ଯୋଗେଶ—କିନ୍ତୁ ଫିନ୍ତୁର ପ୍ରଶ୍ନ ନାହିଁ, ଖୁବ୍ ବେଶି ହେଲେ ସେସ୍ତା ହେବ ଆସନ୍ତୁ ।

ମିଶ୍ର—ଚାଲନ୍ତୁ, ହେଃ ହେଃ, ( ଚାଲିଗଲେ, ପଛରୁ ଆସିଛନ୍ତି ଅମର ଓ ଶିଶିର )

ଶିଶିର—ଲିଟାର ଗୃହକର୍ତ୍ତା ଅବଶ୍ୟ ପେଟକୁ ଟିକଏ ଓଦା କରି ପାରୁଥିଲା ସେ ବି ଗଲା...

ଅମର-ଅଚ୍ଛା ଶିଶିର ! କଚାର ଗୃକସ୍ତ ଯିବାର କାରଣ କ'ଣ କୋଇପାରେ ?

ଶିଶିର– God knows, ସେ ତ ପାରନ୍ତ । ଗୁଡ଼, ମୋର କର୍ତ୍ତବ୍ୟ ଉପରେ ଆମ ବଂଶର ଭବିଷ୍ୟତ ନିର୍ଭର କରେ ।

ଅମର—ତଥାପି · ସଞ୍ଜରକେଲରେ କ'ଣ ?

ଶିଶିର—କିଛି ନହେଲେ ସେଠାରେ ଟିଉସନ ତ ମିଳ ପାରିବ ।

ଅମର - ଅବଶ୍ୟ ବଡ଼ ବଡ଼ ଟାଉନମାନଙ୍କରେ ଟିଉସନ ଗୁଡ଼ା ବେକାରମାନଙ୍କୁ କିଛିଟା ସାହାଯ୍ୟ କରେ ।

ଶିଶିର—ତାହାତ ମୋର ଖୁବ୍ ବଡ଼ ଆଶା, ମନୋଜ ବି ଲେଖିଛି ।

ଅମର—ତୁ ଯା, କିନ୍ତୁ · ମୋର ଗୋଟେ Doubt.

ଶିଶିର—Doubt ? କ'ଣ ପାଇଁ ?

ଅମର—ଟାଉନମାନଙ୍କରେ ଟିଅ ଗୁଡ଼ା ଘର···ମାନେ ଗୃଲୁ, ତେବେ ଭଲ ମଫସଲ ପିଲମାନଙ୍କୁ ଭଲ ପାଠ ପଢ଼େଇ ଦେବେ ।

ଶିଶିର—ଗୁଡ଼ ସେ ବାଜେ କଥା ।

ଅମର—ଦେଖ୍ ଶିଶିର ଟିଉସନ କରୁ କରୁ ଟିଉଟର ହାବୁଡ଼ରେ ପଡ଼ିବୁନୁ ! ( ଆସିଛନ୍ତି ଇନ୍ଦ୍ରଜିତ ) Sir, ନମସ୍କାର !

ଇନ୍ଦ୍ର—କ'ଣ, ଶୁନ୍ଦା Collection ଗୃଲିଛି ?

ଅମର—ନାଇଁ···ଏମିତି···

ଇନ୍ଦ୍ର—ମୁଁ ଭାବିଲି ପୁଣି କିଛି Function ହେଉଛି ।

ଶିଶିର—ବେକାର Desert ରେ ଫକ୍‌ସନ୍‌ ପୂଜା, ତା'ମା ଗୋଟେ ଗୋଟେ Oaccis ମାତ୍ର ।

ଇନ୍ଦ୍ର—ଅରେ ଶିଶିର ବାବୁ ଯେ ! କଣ ଆଜ···?

ଶିଶିର—ଆଗାମୀ ଆଶା ଓ ସ୍ୱପ୍ନକୁ ଧର ରାସ୍ତାରେ ବାଲିଘର ତୋଳବା'ଟା ଆମର ଜନ୍ମଗତ କାମ

ଇନ୍ଦ୍ର—କାହିଁକି ? Interview ର Result ?

ଶିଶିର—No vacency.

ଅମର—ଆପଣଙ୍କ factoryରେ ଗୋଟେ chance ଦିଅନ୍ତୁ ।

ଇନ୍ଦ୍ର—ମୁଁ କ'ଣ ମନା କରୁଛି ? ମୋତେ ଯେତେବେଳେ approach କରୁଥିଲ ସେତେବେଳେ ମୋ ପାଖରେ vacency ନଥିଲା । ତେଣୁ ମୁଁ help କରି ପାରୁନଥିଲି Now there is a vacency. ଘର ଆପତ୍ତି ନଥାଏ ।

ଶିଶିର—ଆପତ୍ତି···, କାହିଁକି ?

ଇନ୍ଦ୍ର—ସବୁଠି ବେକାର ଯୁବକର ଆତ୍ମରକ୍ଷା ମୋ industry ର ଲକ୍ଷ୍ୟ ତଥାପି ଗୋଟେ condition···

ଶିଶିର-ଅମର—Condition ? କଣ

ଇନ୍ଦ୍ର—ଗୋଟେ week ଭିତରେ ତୁମକୁ ମୋଟର ସାଇକେଲ practice କରିବାକୁ ପଡ଼ିବ ।

ଶିଶିର—ଚାକିରି ପାଇଁ ମୁଁ ସବୁ କିଛି କରିବାକୁ ପ୍ରସ୍ତୁତ Please help me !

ଇନ୍ଦ୍ର—ନା ନା, ମୋର ତ ବିଜ୍‌ନେସ୍‌ ତ' ନମ୍ବର ଭିତରେ ଏକ ନମ୍ବର····· ତେଣୁ······

ଅମର—All right. Journey cancelled.

ଇନ୍ଦ୍ର— କନ୍ତୁ ଅମର ! ତୁମ ପାଇଁ ପରେ

ଅମର—ମୋର ତ ବୁଢ଼ା ଅଛୁ, ଖାଉ ପିଲା ବୁଢ଼ା ହୋଟେଲରେ, ମୋର ଅଷ୍ଟ ଚିନ୍ତା କ'ଣ ? କେବଳ ଶିଶିର ପାଇଁ ଗୋଟେ chance ଦଅନ୍ତୁ, ଆମେ ସମସ୍ତେ ଖୁସି ହେବୁ ।

ଇନ୍ଦ୍ର—ତାହାତ ହୋଇଚନ୍ତି ।

ଅମର—ତେବେ···ଶିଶିର surely be appointed ?

ଇନ୍ଦ୍ର—Yes and possitively from to day.

ଅମର—Is it ? ଶିଶିର, ଇସ୍ ଖୁସୀମେ ? next drama ତୋର ।

( ସମସ୍ତେ ହସି ଉଠିଲେ, ଅନ୍ଧାର )



## ॥ ତୃତୀୟ ଦୃଶ୍ୟ ॥

ସେହିଘର, ଅଲୁଅ ଅ.ପିଲ୍ପରେ ଦେଖାଗଲ, ଲତା ବପର୍ଯ୍ୟନ୍ତ ବେଶ ଓ କେଶକୁ ନେଇ କବାଟକୁ ଧରି ଠିଆ ହୋଇଛୁ । ହାତରେ ଏକ Invitation Card, ବାହ୍ୟାର ପଡ଼ୁଥାଏ, ଲୁହର ଦାଗରେ ଗାଲଟା ଫୁଲି ଫୁଲି ଯାଉଥାଏ । ଅତୀତର ସ୍ମୃତି, ବର୍ତ୍ତମାନର ସ୍ଥିତି ଓ ଭବିଷ୍ୟତର ଅବଶୋଷ ତାକୁ ଜଡ଼ କରି ଦେଉଥାଏ ।

ସୁବୋଧ –( voice )ମୁଁ ପ୍ରତିଜ୍ଞା କରୁଛି ମୋ ଜୀବନରେ କୌଣସି ନାରୀକୁ ଅବହେଳା କରିବା ଅସମ୍ଭବ । ମୋ ଜୀବନ ତୋ ହାତରେ ବନ୍ଧା ରହିଲା ।

( ଏମିତି କେତେ କଥା ଶୁଣାଗଲା, କିନ୍ତୁ ଲତା କେମିତି ଜାଣେ ନାହିଁ ଏହି ସମୟରେ ବାହାରୁ ଉତ୍ତେଜିତ ହୋଇ ଆସିଲେ ଶିଶିର )

ଶିଶିର—ଏତେ ଫାଟ ଭୁମର ଲାଗି ( ପଛେ ପଛେ ସାବନୀ ଆସିଲେ ) କାହିଁକି ସେ ଛୁଆ ପିଲାଟାକୁ ଘରୁ ପୁଅ ଭଲ ?

ସାବନୀ– ଆମେ କ'ଣ ତାକୁ ଘରୁ ନେଇ ଆସିଛୁ ? ସେମାନେ ତ ଛାଡ଼ି ଦେଇଥଲେ ।

ଲତା—( ମନର ଭାବ ବଦଳାଇ ) କ'ଣ ହେଲା, ଭାଇ ?

ଶିଶିର—ହବ ଆଜି କ'ଣ ତାଙ୍କର ଆଜ ବାହାଘର, ତାଙ୍କ ପିଲାଟାକୁ ଘରେ ରଖିବା ନ୍ୟାୟ କି ?

ସାବନୀ—ସେ ତ ଯିବାକୁ ବାହାରୁନ, ଆମେ ଆଉ କ'ଣ କରିବା ?

ଲତା—ସେହି ଆସରର ସାଥୀ ପିଲାମାନେ, ତାଙ୍କୁ କ'ଣ ଜବରଦସ୍ତ ଅଟକ ଇ ହୁଏ ?

ଶିଶିର—ତା' ବୋଲି ଲୋକଙ୍କଠୁ ଯୋଡା ମାଡ଼ ଖାଇବ ?

ଲତା—କାହିଁକି ?

ଶିଶିର—ବୋଉକୁ ପଚାର. ଆଜ ମଉସା କ'ଣ କହିଲେ, ପୁଣି କେମିତି ଭାଷାରେ କହିଲେ ।

ସାବନୀ—ଆରେ, ବଡ଼ ଲୋକଙ୍କୁ ଉତ୍ତର ଦେବ କିଏ ?

ଶିଶିର—ତାଙ୍କ ବଡ଼ଲୋକ ତାଙ୍କ ଘରେ, ଲତା ! ପଟୀର କ'ଣ ସବୁ ଅଛି ଅଣିଲୁ !

ଲତା—କ'ଣ ହେବ ?

ଶିଶିର—ତୁ ଅ'ଣ ! ( ଲତା ଭିତରକୁ ଗଲା ) ଆମକୁ ଧମକ ଦେବାକୁ ସେମାନେ କଏ ?

ପାର୍ବତୀ— ଗୁଡ଼, ହେବଗଲେ ମଣିଷ ପ୍ରଜାପାଏ, କହିବଗଲେ ନୁହେଁ ।

ଶିଶିର— ସେଥିପାଇଁ ବାହା ଜେଲରେ ପଚା ପାଉଛନ୍ତି ( ଲତା ଆସିଛି କହିବାକ୍ସ ଓ ଜାମା ଧରି ) ନେଇଯା ବୋଉ ! ତାଙ୍କ ଘରେ ଦେଇ ଆସିବୁ ।

ପାର୍ବତୀ— ମୁଁ......ଏ ସନ୍ଧ୍ୟାରେ......

ଶିଶିର—ପୋଲିସ ପଠେଇବାର ଧମକ ତ ଶୁଣିଛୁ, ଚାଲ ମୁଁ କେହି ଲୋକ ସହିତ ସାଙ୍ଗ କରେଇ ଦେବି, ତୁ ଯାଇ ଫେରି ଆସିବୁ ।

ପାର୍ବତୀ ହଉ, କ'ଣ ଆଉ କରିବ, ଚାଲ, ଲତା ! ରନ୍ଧାରନ୍ଧିର ଯୋଗାଡ଼ କର ମୁଁ ଆସୁଛି । ( ପାର୍ବତୀ ଓ ଶିଶିର ଚାଲିଗଲେ, ଲତା ସେମିତି ଛିଡ଼ା ହୋଇଥାଏ, ବାହାରୁ ଆସିଛି ଅମର )

ଅମର—ଦେଖିବ ଶଳା ସୁବୋଧ କେମିତି ବାହାହେବ ! ଲତା ! ଆଣିଲୁ ସୁବୋଧର ଗୋଟେ ଯୋଡ଼େ ଖଠି

( ଲତା ଶୁଖିଲା ହସ ଟେନାଏ ନେଇ ଭିତରକୁ ଯାଉଥିଲା । )

ଆରେ ହସୁଛୁ କ'ଣ ? ଆଜି ଯଦି ସେ ବାପ ପୁଅଙ୍କ ସାଙ୍ଗରେ ଏ ରଘୁମିଶ୍ର ବୁଢ଼ାକୁ ମାମୁଁ ଘର ନ ଧରେଇଛି, ତାହେଲେ ମୋତେ କହିବୁ ।

ମିତ୍ର—( ପ୍ରବେଶି ) କାହିଁକି ସେ ଛୋଟ ଲୋକଙ୍କ ପାଇଁରେ ଲାଗି ନିଜର ଇଜ୍ଜତ ଦେବୁ ?

ଅମର—ତୁ ମୋତେ ଆଜି ସେ dialogue ଶିଖାନା, ଶଳା ଲତା ଭଳି ଗୋଟେ ନିମ୍ବର ଝିଅକୁ Cheat କରି ବାହାହେବ ଗୋଟେ 3rd class ଝିଅକୁ !

ଶିଶିର—କେବଳ ଯୌତୁକ ଲୋଭରେ

ଅମର—ନା ନା, ସେ ବାହାଘର କଦାପି ହୋଇ ପାରିବନି ।

ଇନ୍ଦ୍ର—ନିଶ୍ଚୟ ହେବ ସେ ବାହାଘର ( ପଛି ଆସିଲେ ଇନ୍ଦ୍ରଜିତ ) କାରଣ ପ୍ରାୟ ଛ'ମାସ ପରେ ଇନ୍ଦ୍ରଜିତ ମହାନ୍ତିର ଘରକୁ ନେଇ ସୁବୋଧ ପଟ୍ଟନାୟକ ବାପ ହେବାର ଗୌରବ ଲାଭ କରିବ ।

ଅମର ଶିଶିର—( ଆଶ୍ଚର୍ଯ୍ୟରେ ) ଇନ୍ଦ୍ରଜିତ ମହାନ୍ତି ! ! !

ଇନ୍ଦ୍ର—ହଁ, ଯାହାସବୁଠୁ ଲଳିର ବାହାଘର ବର୍ଷେ ହେଲା ସରିଯାଇଛି ।

ଶିଶିର—କିନ୍ତୁ ....., ସୁବୋଧ ସହିତ ଲଳିର.....

ଇନ୍ଦ୍ର—ଅବଶ୍ୟ, ତଥାପି ମୁଁ Revange ନେବି ।

ଅମର—That is the Point. ସୁବୋଧକୁ ଶିକ୍ଷା ଦେବାକୁ ପଡ଼ିବ ।

ଇନ୍ଦ୍ର—ପୁଣି ଯେମିତି ସେମିତି ନୁହେଁ ତା ମୁହଁରେ ଯୋତାପିଟି, ଲତାର ବାହାଘର କରି ତାକୁ ଗୋଟେ challenge ଭିତରକୁ ଠେଲି ଦେବାକୁ ପଡ଼ିବ ।

ଶିଶିର – ଲତାର ବାହାଘର ? ( ଲତା ଆସୁଥିଲା )

ଅମର – ହୋଇ ପାରନ୍ତା.....କିନ୍ତୁ...

ଶିଶିର– ସେମିତ Candidate ପୁଣି ଏତେ ଶୀଘ୍ର···?

ଇନ୍ଦ୍ର– ଚନ୍ଦ୍ରକାନ୍ତ ମହାପାତ୍ର, ଫିଲୋସଫି ଲେକ୍‌ଚରର୍‌, ପସନ୍ଦ ହେବ ?

ଅମର–କ'ଣ ଶିଶିର ! ଲାଗିପଡ଼ିଲେ ଗୋଟେ Interesting ହୁଅନ୍ତା ।

ଶିଶିର କିନ୍ତୁ ··ସେ ଯେତେବେଳେ ଲେକ୍‌ଚରର୍‌ ।

ଇନ୍ଦ୍ର—କେବଳ ଯୌବନ ନୁହେଁ, ପ୍ରଚୁର ଟଙ୍କାମଧ୍ୟ ଦରକାର

ଶିଶିର—ଏତେ ଟଙ୍କା······ !

ଇନ୍ଦ୍ର—ମୁଁ ଅଛି ।

ଶିଶିର—Sir···

ଇନ୍ଦ୍ର—ଖୁବ୍‌ ବେଶି ହେଲେ ଚାଲି ହାଜାର, ମୋର ଏ ବକ୍ଷର ହୃଦୟର ଜ୍ୱାଳା ଟିକଏ ଉପଶମ ହୁଅନ୍ତା··· ( ଦୀର୍ଘଶ୍ୱାସ )

ଶିଶିର—ଏତେ ଶୀଘ୍ର·· ମାନେ·· ମୋତେ କେମିତ ସ୍ୱପ୍ନଭଳି ଲାଗୁଛି ।

ଇନ୍ଦ୍ର—କ'ଣ ଅମର ! ଟିକଏ····· ଲାଗିପଡ଼ିଲେ ··· କେମିତ ହୁଅନ୍ତା ?

ଅମର – I am always ready.

ଇନ୍ଦ୍ର—ତାହେଲେ ଶିଶିର ! କଣ Proceed କରିବା ?

ଶିଶିର - ଲତା କ'ଣ ଆପଣଙ୍କର ଭଉଣୀ ନୁହେଁ ? ତେଣୁ ସମସ୍ତଙ୍କ ମତରେ ଯୋଉଟା ସିଦ୍ଧାନ୍ତ ହେବ ତାହାହିଁ ହେଉ ।

ଇନ୍ଦ୍ର—All right. ତାହା ହେଲେ ବର୍ତ୍ତମାନ ତୁମକୁ ଚନ୍ଦ୍ରକାନ୍ତ ପାଖକୁ ଯିବାକୁ ପଡ଼ିବ ।

ଶିଶିର—ମୁଁ ତ ତାଙ୍କୁ ଜାଣେନ କ ଚହ୍ନେନ ।

ଇନ୍ଦ୍ର—ତୁମର କିଛି କରିବା ଦରକାର ନାହିଁ । ଏଇ Addressରେ ସେ ରହେ । ମୋ କଥା କହି ମୋଟର ସାଇକେଲ ପଛରେ ବସାଇ ନେଇ ଆସିବ । ଏଠି ପହଞ୍ଚିଲେ ମୁଁ ତାକୁ ସଜ୍ଜ କରିବ । He is my intimate friend ( ଶିଶିରକୁ Address ଦେଲେ )

ଅମର—ବେଶ୍, ଠିକ୍ ଅଛି, ତୁ ଯା ! ମୁଁ ଏଣେ ସବୁ ଜିଷ୍ଟକର ମା ର Arrange କରେ ।

ଇନ୍ଦ୍ର—ଗାଡ଼ିର ଗୃହ, ଟାଙ୍କରେ ପେଟ୍ରୋଲ Ready ( ଗ୍ଲବଦେଲେ )

ଶିଶିର—ଅମର, ବୋଉକୁ ଟିକିଏ ଜଣେଇ ଦେବୁ, ମୁଁ ଆସୁଛି

ଅମର—ଆରେ, ଆମେତ ଅଛୁ, ମାଉସୀ ଆସନ୍ତୁ ତୁ ଯା ! ( ଶିଶିର ବ୍ୟସ୍ତରେ ଷ୍ଟାର୍ଟ ଦେଲେ ) ଆଚ୍ଛା, ତାଙ୍କର ବାପା ମା' ଭାଇ ଭଉଣୀ ବା Any relative ?

—He is one and only one.

ଅମର—ତାହେଲେ ବାହାଘର ତାଙ୍କର ନିଜ ମତରେ ।

ଇନ୍ଦ୍ର—ତାମାଓନ, ଧରନଅ ମୋ ମତରେ ।

ଅମର—ତେବେ ଲତାର ବାହାଘର ହୋଇଗଲା ବୋଲି ଧରନେବା ?

ଇନ୍ଦ୍ର—ଅବଶ୍ୟ, କିନ୍ତୁ ଗୋଟେ ଭୁଲ ହୋଇଗଲା ସ୍ୱା ଭିତରେ-

ଅମର—ଭୁଲ ? କଣ ପାଇଁ ?

ଇନ୍ଦ୍ର—ଶିଶିର ସେ Addressରେ ତ ଚନ୍ଦ୍ରକାନ୍ତକୁ ପାଇବେନ ।

ଅମର—ମାନେ ?

ଇନ୍ଦ୍ର—ଚନ୍ଦ୍ରକାନ୍ତ ବାଲେଶ୍ବର ଟ୍ରାନସ୍‌ଫର ହୋଇ ଅସିଛୁ ।
ମୋର ସେ କଥା ଆଦୌ ମନେ ନାହିଁ ।

ଅମର—ଜେନେ······କଣ···?

ଇନ୍ଦ୍ର—You Please follow, ଶିଶିର !

ଅମର—ଶିଶିର ଏବଂ ସେଇଁଲକ ମୋଟର ସାଇକେଲ
ଚଳଉଛୁ ସେ ବୋଧହୁଏ ଟାଉନ ପାର ହୋଇ ଯାଇଥିବ ।

ଇନ୍ଦ୍ର ତାହାଲେ Railway gate କୁ ଫୋନରେ କଣ୍ଟାକ୍ଟ
କରିଦେଲେ ।

ଅମର—ଠିକ୍ ଅଛୁ, ମୁଁ ସାଇକେଲରେ···ବୁଝି ଦେଉଛୁ ।

ଲତା—( ବାହାରି ଆସିଛୁ ) ଅମର ଭାଇ !

ଅମର—ଅପେକ୍ଷା କର, ମୁଁ just ଆସୁଛୁ ।
( ବାଂସ୍ତରେ ଚାଲିଗଲେ )

ଲତା—ଏ ସବୁ କଣ ହେଉଛୁ sir !

ଇନ୍ଦ୍ର–( ସିଗାରେଟଟା ପାଦରେ ଚାପିଦେଲେ ) ଗୋଟେ
ଡ୍ରାମା ସରିଗଲା ।

ଲତା–ଡ୍ରାମା ! ! ( ଆଶ୍ଚର୍ଯ୍ୟ )

ଇନ୍ଦ୍ର—( ହସି ) yes, ଯାହାସବୁ ହୋଇଗଲା ଧରନ୍ତୁ ଗୋଟେ
ନାଟକ ।

ଲତା—( ସାମାନ୍ୟ ଗମ୍ଭୀର ) ଉଦ୍ଦେଶ୍ୟ ?

ଇନ୍ଦ୍ର—ଉଦ୍ଦେଶ୍ୟ ? Very straight and clear.

ଲତା—ଆପଣ କ'ଣ ଚାହାନ୍ତି ?

ଇନ୍ଦ୍ର—ମୁଁ ଚାହେଁ······I want you for a moment.
ନବଡ଼ ଅନ୍ଧକାର ଭିତରେ ତୁମ ଓଠରୁ କିଛି ଆଲୋକ
ଚାହେଁ ( ଆଗେଇଲେ )

ଲତା—( କୁହୁଯାଇ ) ଏଇଟା Prostitude ନୁହେଁ, ଜଣେ ଭଦ୍ରଲୋକର ଘର ।

ଇନ୍ଦ୍ର—ଓଃ Sorry, ଏ ପିଚ୍‌ ଢଳା ରାସ୍ତା ଅନ୍ଧାର ଭିତରେ ଆମର କାହାଣୀ କୁଆଡ଼େ ଲୁଚିଯିବ ଲତା !

ଲତା—ଆପଣ ଯାଇପାରନ୍ତି ।

ଇନ୍ଦ୍ର—ହଁ ହଁ ନିଶ୍ଚୟ ଚାଲିଯିବି, ଆସିଛି ଯେତେବେଳେ ନିଶ୍ଚୟ ଯିବ, କିନ୍ତୁ ଏଇ ଘଣ୍ଟା... ଭାଙ୍ଗିଯିବ ଏବଂ ନିଶ୍ଚୟ ଭାଙ୍ଗିଯିବ ( ଝୁଙ୍କି ପଡ଼ୁଥିଲେ ଲତା କବାଟ ପାଖକୁ ଖୁନ୍ଦି ଯାଉଥିଲ )

ଲତା—ଇସ୍‌ ! କି ଅଭଦ୍ର ଆପଣ !

ଇନ୍ଦ୍ର—( ହସିଉଠିଲେ ) ତୁମଭଳି ଗୋଟେ ସୁନ୍ଦର ଝିଅକୁ ଏମିତି ଏକୁଟିଆ ପାଇ ଆଦ୍ଧର ଟିକିଏ ଅଭଦ୍ର ହୋଇ ଯିବାକୁ ଇଚ୍ଛା ହେଉଛି ।

ଲତା—ବାହାର ଯାଆନ୍ତୁ ! ( ଦ୍ୱାର ପାଖକୁ ଯାଉଥିଲେ, ଇନ୍ଦ୍ରଜିତ ପାଦ ଘୁଷି ଘୁଷି ହସି ଯାଉଥିଲେ )

ଇନ୍ଦ୍ର—ବାହାର ଯିବ ? ପୁଣି କାଲି ହାତରେ ? ତୁମକୁ ଯୁବକଟି ଦେଇଥିଲ କ'ଣ ବୃଥା ? ଶିଶିରକୁ ଯୁବକଟି ଦେଲ ସିଏ ବି କ'ଣ ବୃଥା ? ଶେଷରେ ଏତେ ଗୁଡ଼ିଏ ଆଲୋକ ଜଳି ସବୁ କ'ଣ ବୃଥା ?

( ହସି ହସି ଯାଉଥିଲେ କିନ୍ତୁ ଲତା ଭିତରେ ପଶି ଯାଇ ହଠାତ୍‌ କବାଟ ବନ୍ଦ କରି ଦେଲେ, ଇନ୍ଦ୍ରଜିତ କବାଟ ଧରି ନେଇଛନ୍ତି, ବାହାରୁ ମନ୍ଦମିଶା ହସନେଇ ଆସିଛନ୍ତି ସୁବୋଧ, ବାହାଘର ଶୋଭାଯାତ୍ରାରୁ ସେ ଫେରି ଆସିଛନ୍ତି । ଦେହ ମୁଣ୍ଡ ସବୁରେ ସଜା ହୋଇଥିଲେବି ନିଜର ଅଙ୍ଗରୁ ସବୁ ଅସଜଡ଼ା ପଣ ଜଣା ପଡ଼ୁଥାଏ )

ସୁବୋଧ–ସାବାସ ! ଇନ୍ଦ୍ରଜିତ !

ଲତା—( କବାଟ ଖୋଲି ଦେଉଛି ) ସୁବୋଧ ଭାଇ !

ଇନ୍ଦ୍ର – ( ମୁଁ ଛାଇ ଅସିଛନ୍ତି ବଫଳଟାର ସଂକେତ ଧର )

ସୁବୋଧ—ସେ ତେବେ ତୋର ଅସଲ ରୂପ ?

ଇନ୍ଦ୍ର—କଏ ? ସୁବୋଧ !

ସୁବୋଧ -- ଡରିଗଲୁ ବୋଧ ହୁଏ ?

ଇନ୍ଦ୍ର—ରାମାୟଣରେ ଇନ୍ଦ୍ରଜିତର ନାମ ଶୁଣିଥିବୁ, ସେ ମରିଗଲା ଡରିଲାନ, ଆଉ···ମୁଁ ଇନ୍ଦ୍ରଜିତ ମହାନ୍ତି, ମୁଁ ମରିବନ.କ ଡରିବନ ।

ସୁବୋଧ— ଘାକା ଆକାଶରେ ଢଡ଼ ଢଡ଼ର ଆବାଜ ଶୁଣି ଲୋକେ ବିଶ୍ବାସ କରିବେନ !

ଇନ୍ଦ୍ର – ସୁବୋଧ ! ମୋ ବଜ୍ରନେଶରେ ମୁଣ୍ଡ ପୂରେଇବା ଠିକ୍ ହେଉନ ।

ସୁବୋଧ—ସେ ଗୋଟେ ଫୁଲ, ସ୍ବାର ରଙ୍ଗ ଅଛି, ଗନ୍ଧ ଅଛି, ଭ୍ରମର ହୋଇ ଉପଭୋଗ କର, ପୋକ ହୋଇ ତାର ପାଖୁଡ଼ାଗୁଡ଼ିକୁ କାଟି ଟିକ୍ ଟିକ୍ କରି ଦେ'ନା, ଏଥିରେ କେହ୍ବ କଷ୍ଟ ପାଇବେନ । ପୋକର ଦଂଶନରେ ଫୁଲ ତ ନଷ୍ଟ ହେବ; କିନ୍ତୁ ପାଖୁଡ଼ାର ବିଷ ଜ୍ୱାଳାରେ ପୋକ ଛଟପଟ ମରିବ ।

ଇନ୍ଦ୍ର–ସେ କିନ୍ତୁ ମୋର ଜାପାନୀ ଖେଳନା ।

ସୁବୋଧ—ଖେଳନାକୁ ଅଖିର ଇସାରାରେ ନଚେଇବାକୁ ପଡ଼େ, ହାତର ବଣ୍ଡରରେ ନୁହେଁ ।

ଇନ୍ଦ୍ର—ସୁବୋଧ ! ମୁଁ କହୁଛି ମୋ Private workରେ ତୁ ହାତ ଦେ'ନା ।

ସୁବୋଧ – ମୁଁ ବି କହୁଛି ଅନ୍ୟ କାହାର Private lifeରେ ତୁ ହାତ ଦେ'ନା ।

ଇନ୍ଦ୍ର—ଇନ୍ଦ୍ରଜିତ ମହାନ୍ତି ଯେଉଁ କାମରେ ହାତ ଦିଏ ସେ କାମ ସେ ଶେଷକରେ ।

ସୁବୋଧ—ହାତଟା ଯଦି ନିଆଁ ଉପରେ ପଡ଼େ ?

ଇନ୍ଦ୍ର,—ହୁଏତ ନିଆଁଟା ଲିଭି ଯାଇପାରେ ।

ସୁବୋଧ—ଇନ୍ଦ୍ରଜିତ ! ମୁଁ ଅପେକ୍ଷା କରି ପାରିବିନି, ଦେଉଣା ଲୋକ ଶୁଣିବା ଆଗରୁ ଏ ସ୍ଥାନ ଛାଡ଼ି ଚାଲିଯା, ନହେଲେ ରଙ୍ଗପାଟଣା ଗାଁର ଦୁର୍ଦ୍ଧର୍ଷ ଲୋକଙ୍କ ହାତରୁ ବଞ୍ଚିବା କଷ୍ଟ ହୋଇପଡ଼ିବ ।

ଇନ୍ଦ୍ର—Is it ? ମୁଁ ଦେଖିବି ଯଦି ସୁଯୋଗ ଆସେ ( ଚାଲିଗଲେ )

ଲତା—ସୁବୋଧ ଭାଇ ! ମୋତେ କ୍ଷମା କର ।

ସୁବୋଧ—କ୍ଷମା ? ( ଲତାକୁ ଚାହିଁଲେ, ହସିଲେ ଓ ବୋତଲ ବାହାରକଲେ )

ଲତା – ସେଟା କଣ, ସୁବୋଧ ଭାଇ !

ସୁବୋଧ—ମଦ, ଅତୀତର କୋଣାର୍କକୁ ଭାଙ୍ଗି ଦେବାପାଇଁ ବଙ୍ଗୋପ ସାଗରର ଏପରି ( ପିଇଲେ ) ଢେଉମାନେ ସିନା ସହଜରେ ଭୁଲିଯାଇପାରନ୍ତି ଅତୀତକୁ, କିନ୍ତୁ ମୁଁ ମୋ ଜୀବନଟାକୁ ଢାଳିଦେଇ ମଧ୍ୟ ସେ ଅତୀତକୁ ପାସୋରି ପାରୁନି ।

ଲତା—ଲତା ଭଳି ଗୋଟେ ଅଲୋଡ଼ା ଝିଅକୁ ସହଜରେ

ଭୁଲିଦେବ ସୁବୋଧ ଭାଇ !

ସୁବୋଧ—ଛି ! ଛି ! ଲଜ୍ଜା ନାହିଁ ତୋତେ ? ତୁ ଏକଥା କହି ପାରୁଛୁ ? ହଁ, ରୂପ ବ୍ୟବସାୟୀର ହୃଦୟ ନଥାଏ ( ପିଇଗଲେ, ଲତା ଗ୍ଲାସଟିକୁ ଉଠାଇଲ ) ଓଃ କି ଶାନ୍ତି ! ଲତା ! ଅବଶୋଷର ଶେଷ ପାହାଚରେ ଚଢ଼ି ମୁଁ ଆଜ ଦୁଷ୍ଟଗୁରର ପାଇଁ କାହା ହେଉଛି । ( ଲତା ଆସିଛି )

ଲତା –( ଲୁହ ଭରା ଆଖିରେ ସିନ୍ଦୂର ବାହାର କରି ) ସୁବୋଧ ଭାଇ ! ଏ ସିନ୍ଦୂର ନେଇ ଯାଅ, ଲିଳା ଭଉଜଙ୍କ ମୁଣ୍ଡରେ ଢାଳି ଦେବ ( ଲୁହରେ ଆଖି ଫାଟି ପଡ଼ୁଥାଏ )

ସୁବୋଧ ଏଁ ! ସିନ୍ଦୂର ? ( ବୋତଲ ଖସିପଡ଼ୁଛି ) ତୁ ସେ ସିନ୍ଦୂର ରଖିଛୁ ?

ଲତା –( ଲୁହରେ ଫାଟି ପଡ଼ିଲିକ )

ସୁବୋଧ ନା ନା ଲତା ସେ ସିନ୍ଦୂର ତୋର······

ଲତା—ମୁଁ ପତିତା, ରୂପ ବ୍ୟବସାୟୀ, ସିନ୍ଦୂର ମୋର କଣ ହେବ ?

ସୁବୋଧ—ଲତା ! ତୁ ମୋର । ସେ ସିନ୍ଦୂର ତୋର । ( ସିନ୍ଦୂର ପିନ୍ଧାଇବା ସମୟରେ ଆସିଛନ୍ତି ଯୋଗେଶ, ସିନ୍ଦୂର ଫରୁଆ ଖସିପଡ଼ୁଛି )

ଯୋଗେଶ ସୁବୋଧ ! ଏ ସବୁ କ'ଣ ହେଉଛି ?

ସୁବୋଧ—ବାପା ! !

ଯୋଗେଶ—ଶୋଭାଯାତ୍ରାରେ ତୋତେ ଶହଶହ ଭଦ୍ର ଲୋକ ଅପେକ୍ଷା କରିଛନ୍ତି, ତୁ କ'ଣ ନା ମଦପିଇ ବେଶ୍ୟା ଘରେ ପଶିଛୁ ?

ସୁବୋଧ—( ଲଜ୍ଜା ଚମକି ଉଠିଛି ) ବାପା !

ଯୋଗେଶ—ତୋର ଅଙ୍କ ବାହାଦୁର, ଦେବ୍ରଁଠୀବ ମନେ ପକାଇ
ଦେବାକୁ ପଡ଼ିବ ?

ସୁବୋଧ—ବାହାଦୁର ମୋର ଯାଉଥାଉଛି ବାପା !

ଯୋଗେଶ—( ଅସମ୍ଭବ ରଗିଗଲେ ) ଯାଉଥାଉଛି ! କ'ଣ ଏଇ
ବେଶ୍ୟା ପାଇଁରେ ?

ସୁବୋଧ—( ଦୃଢ଼ ସ୍ୱରରେ ) ହଁ,

ଯୋଗେଶ—( ସ୍ୱପ୍ନୋଦ୍ଧାନ'ର ) ତଡ଼କେଇ ! ( ସାବର୍ଣ୍ଣୀ ଅସିଛନ୍ତି )
ଏ ଶ୍ରେଷ୍ଠଲୋକଗୁଡ଼ା ପଇସା ଲୋଭରେ ତୋତେ ବାନ୍ଧି
ରଖିଛନ୍ତି । 'ବେଶ୍ୟାର ମଦ ପିଇ ତୁ ମାତାଲ ହୋଇଛୁ—

ସାବର୍ଣ୍ଣୀ—ପଞ୍ଚାନାଥକ ବାବୁ ! ଅ.ମ ଝିଅ ଆମଘରେ ଅଛି ।

ଯୋଗେଶ - ତୁମେ ଚକ୍ରାନ୍ତକର, ତୁମର ଜାଲ ବିଛାଇ ମୋ
ପୁଅଟାକୁ ନଷ୍ଟ କରି ଦେଲଣି ।

ସାବର୍ଣ୍ଣୀ - ନେଇଯାଅ ତୁମ ପୁଅକୁ ।

ସୁବୋଧ–ମାଉସୀ !

ଲତା ବୋଉ !

ସାବର୍ଣ୍ଣୀ—ଯାଅ, ସୁବୋଧ ! ବଡ଼ଘରୁ ବାହାହୋଇ ତୁମ ଘର
ସଜାଡ଼ିବ ।

ଯୋଗେଶ—ତୁମେ ଆଉକଣ ଭାବିଛ କି ? ଆ, ସୁବୋଧ !
ତୋତେ ଅନେକ ଲୋକ ଅପେକ୍ଷା କରିଛନ୍ତି । ବାହାଘର
ପରେ ମୁଁ ଏ ଶ୍ରେଷ୍ଠଲୋକଙ୍କୁ ଦେଖିବି ।

ସାବର୍ଣ୍ଣୀ–ଯାଅ ସୁବୋଧ, ଲତା ତୁମକୁ ବାହାହୋଇ ପାରିବନି ।

ଯୋଗେଶ—ଆ, 'ସୁବୋଧ ! ( ଟାଣି ନେଇଗଲେ )

ଲତା—ସୁବୋଧ ଭାଇ !

ସୁବୋଧ - ଲତା ! ( କହୁ କହୁ ଗାଡ଼ିଟି ଅଟକିଲା, ଲତା ଅଶ୍ରୁଳ ନୟନରେ ଗୁହିଁ ଥାଏ, ଦୂରରୁ ଢୋଲ ମହୁରୀ ଶବ୍ଦ କ୍ରମେ ନିକଟ ତର ହେଉଥାଏ । )

ସାବିତ୍ରୀ—ତମେ ବଡ଼ ଲୋକ ହେଲ ବେଳ ଯାହା ଇଚ୍ଛା ତାହା କହୁଥିବ, କରୁଥିବ । ଦୁନିଆଁଟା ଭୁମ ହୋଇ ବସିଥିବ ।

ଲତା—ହଁ ବୋଉ ! ଏ ଦୁନିଆଁଟା ବେଳେ ବେଳେ ମାରୁନ୍ତ ହୋଇଯାଏ । ( ଏହି ସମୟରେ ବାହାରୁ ବ୍ୟସ୍ତ ସ୍ୱରରେ ଦୌଡ଼ି ଆସିଛି ଅମର ଧଇଁ ସଇଁ ହୋଇ )

ଅମର—ଲତା ! ସବୁ ସରିଯାଇଛି ।

ଲତା, ସାବିତ୍ରୀ—( ବ୍ୟସ୍ତରେ ) କଣ ହେଲା, ଅମର ! ଅମର ଭାଇ !

ଅମର—ଶିଶିର ! ମୋଟର ସାଇକେଲ ସହ ଓଭରବ୍ରିଜରୁ ଚଳନ୍ତା ଟ୍ରେନ ଉପରକୁ ଖସି ପଡ଼ିଛି ।

ଲତା - ( ଥର ଥର ଗଳାରେ ) ଭାଇ କଣ ତେବେ······?

ସାବିତ୍ରୀ – ( କିଛି ବୁଝି ନପାରି ) ଶିଶିର କଣ ? ମୋଟର ସାଇକେଲ ?

ଅମର—ମୁଁ କିଛି ଠିକ୍ କହି ପାରୁନି, ମୁଁ ଏବେ ଷ୍ଟେସନ ଯାଉଛି, ତୁମେ ବସ୍ ପିଟାଳି ବାହାରି ଆସ ।

( ଅମର ବ୍ୟସ୍ତ ହୋଇ ଗୁଲିଗଲା, ବାଣ, ଢୋଲ, ମହୁରୀ ଏବଂ ରେଲଗାଡ଼ି ଓ ମୋଟର ସାଇକେଲର ବିକଟାଳ ଶବ୍ଦରେ ମଞ୍ଚଫାଟି ପଡ଼ିଲା, ସାବିତ୍ରୀ ଲତାକୁ କଣ କହୁଥିଲା ବେଳେ

ଅନ୍ଧାର

# ॥ ଚତୁର୍ଥ ଦୃଶ୍ୟ ॥

ସନ୍ଧ୍ୟା । ଅଦ୍ଭୁତ ଢଙ୍ଗେଇ ଢଙ୍ଗେଇ ଦୌଡ଼ୁଛନ୍ତି ।
ଅପରାହ୍ନରେ କଥା ଭାଷା ହୋଇ ଆସିଲେ ମିଶ୍ର
ଓ ଇନ୍ଦ୍ରଜିତ ।

ମିଶ୍ର—ହଇହେ, ସବୁଧ ଗୋବିନ୍ଦ କନ୍ଲୁ ଏତେ ଦାମ୍‌ର ମୋଟର ସାଇକେଲଟା ନଷ୍ଟ ହୋଇଗଲା ।

ଇନ୍ଦ୍ର—( ଖାଜପୁର ହସନେଇ ) ଇନ୍ଦ୍ରଜିତ ମହାନ୍ତି ଖୁବ୍ ବୋକା ନୁହେଁ । ସେ ମୋଟର ସାଇକେଲ ମୋର ନଥିଲା, ମୋର ଜଣେ ବନ୍ଧୁ ଆନନ୍ଦର, ଯାହା ସହିତ ଘର୍ଷ ଜନର ଶତ୍ରୁତା ପରେ ନକଟରେ Compromise ହୋଇଥିଲା । ତେଣୁ ଜାଣି ଜାଣି ତା'ର ବ୍ରେକ୍ କାଟି Accidentର Plane କରିଥିଲି ।

ମିଶ୍ର—ହେଃ ହେଃ, ଗୋଟେ ଗୁଳିରେ ଦୁଇଟା ଶିକାର ।

ଇନ୍ଦ —ତଥାପି · ମୁଁ ବହୁତ ପଛରେ—

ମିଶ୍ର—ଏଣ୍ଣିକର ସୁଯୋଗ ନେଇ ଆଗେଇ ଯାଅ ।

ଇନ୍ଦ୍ର—ପରିସ୍ଥିତି ସୃଷ୍ଟି କରିବା ଦାୟିତ୍ୱ ତୁମର ( ଘଡ଼ିଦେଖି ) ମୁଁ ଆସେ ।

ମିଶ୍ର—ହଁ ହଁ,···କିନ୍ତୁ···

ଇନ୍ଦ୍ର—ପରେ ବୁଝିବା ( ଚାଲିଗଲେ )

ମିଶ୍ର - ପିଲାଲୋକ, ପଇସା ଅଛି, ଖେଳ ଚାଲିଛି, ହାରଜିତ ବି ଚାଲିଛି । ଦେଖାଯାଉ କେଉଁ ପାଣି କୁଆଡ଼େ ଯାଉଛି ।

( ପଛରୁ ଆସିଛନ୍ତି ସାବତ୍ରୀ ) କିଏ ? ସାବିତ୍ରୀ ! ସନ୍ଧ୍ୟା ହେଲାଣି, କୁଆଡ଼େ ଯାଉଛ ?

ସାବିତ୍ରୀ ( ଦୁଃଖରେ ସଂପୂର୍ଣ୍ଣ ଅଧୈର୍ଯ୍ୟ ) ନନା, ମୋ ଶିଙ୍ଗିରକୁ ବଞ୍ଚେଇ ଦିଅ ନନା ! ମୁଁ ଭିକ୍ଷା ମାଗୁଛି ।

ମିଶ୍ର—ହେଃ ହେଃ ସାବିତ୍ରୀ ! ମୁଁ ବି ଦିନେ ତୁମକୁ ମାଗିଥିଲି, ମନେଅଛି, ଖାଲି ହାତରେ ମୁଣ୍ଡ ପିଟି ଦେଇଛି ।

ସାବିତ୍ରୀ--ସେ ଦିନକୁ ମନେ ପକେଇ ଦୁଃଖ ଦିଅନା ନନା !

ମିଶ୍ର ପିଲାଦିନର ଖେଳ ସହଜରେ ଭୁଲି ହୁଏନା । ( Pause ) ମୁଁ ଯେ ମୋ ଜୀବନଠାରୁ ତୁମକୁ ବେଶି ଭଲ ପାଉଥିଲି, ତୁମେ ଜାଣ, କିନ୍ତୁ ତୁମ ବାପା ମତେ ଭୁଲ୍ ବୁଝି ତୁମକୁ ସୋମନାଥ ମହାନ୍ତି ସହ ବିବାହ ଦେଲେ, ଆଜି ତୁମେ ଚୁପ୍ ଚାପ୍ ସବୁ ଦେଖି ଗଲ, ସହିଗଲ...

ସାବିତ୍ରୀ—ମୁଁ ଆଉ କଣ କରିଥା'ନ୍ତି ? ଜାତିଭେଦ ଆମ ଭିତରେ ଏକ ପ୍ରାଚୀର ହୋ'ଇ ଛିଡ଼ାହେଲା ।

ମିଶ୍ର—ହେଃ ହେଃ ସାବିତ୍ରୀ ! ପ୍ରେମରେ ଜାତି ଧର୍ମ ବର୍ଣ୍ଣ କେହି ବାଧା ଦେଇ ପାରନ୍ତି ନାହିଁ । କେବଳ ମୋ ପାଖରେ ଟଙ୍କାର ଅଭାବ, ତୁମକୁ ମୋ ଆଡ଼କୁ ଟାଣି ପାରିଲାନି ।

ସାବିତ୍ରୀ—ନନା ଯାହା କହିଲେବି ମୁଁ ଆଜ ସହିବାକୁ ଆସିଛି ।

ମିଶ୍ର—କେବଳ ସେହି ପ୍ରତିଜ୍ଞାରେ ମୁଁ ଆଜିଯାଏ ବିବାହ କରିନି ଏଇ ହାତରେ ଶହ ଶହ ହାତଗଣ୍ଠି ପକେଇଲି, କିନ୍ତୁ ମୋ ହାତରେ ଗଣ୍ଠି ପଡ଼ିପାରିଲାନି । କଣ ଦୟା ପାଇଁ ଅନାଥ ଶ୍ରମରୁ ଅମରକୁ ଆଣି...( କଣ୍ଠରେ ଆର୍ଦ୍ରତା )

ସାବିତ୍ରୀ—ଥାଉ ନନା !

ମିଶ୍ର—ଧୂର୍ତ୍ତ ହୋଇ ମୁଁ ନିଜକୁ ଜାଳେଇ ଦେଉଛି, କିନ୍ତୁ ମୋ ସାଙ୍ଗରେ ତୁମକୁ ବି ଜାଳିବାକୁ ପ୍ରତିଜ୍ଞା କରିଥିଲି, ଆଉ··· ଜାଳିବି ଦେଉଛି ।

ସାବିତ୍ରୀ—ଏତେ ଜଳି ଜଳି ବି ପାଉଁଶ ହୋଇ ପାରିଲିନି ।

ମିଶ୍ର—ମୁଁ ଚାହୁଁଥିଲି, ତୁମେ ଦିନେ ମୋ ପାଖରେ ହାତ ପାତିବ, ଆଜି ଆଜି ସେଇଆ ହେଲା । କିନ୍ତୁ ତୁମକୁ ନିରାଶ କରିବି । ମୋ ଜୀବନର ଶେଷ ଶପଥ ପୂରଣ କରିବି ।

ସାବିତ୍ରୀ—ନନା ! ମୋ ପୁଅ କଣ ତୁମର ନୁହେଁ ।

ମିଶ୍ର—ମୁଁ ଯେତେବେଳେ ତୁମର ନୁହେଁ, ତୁମ ପୁଅ କେମିତି ମୋର ହେବ ?

ସାବିତ୍ରୀ—ମୁଁ ତୁମ ପାଦ ଧରୁଛି, ମୋତେ କିଛି ଦିଅ, ମୋ ଶିଶିରକୁ ବଞ୍ଚେଇବି ।

ମିଶ୍ର—କେବଳ ତୁମର ଆଖିର ଲୁହ ଦେଖିବା ପାଇଁ ଅନେକ କିଛି କରିଛି, ଆହୁରି ଅନେକ ବାକି ଅଛି ।

ସାବିତ୍ରୀ—ନନା, ସବୁ ପ୍ରତିଶୋଧ ଭିକମସ୍ତରେ ମୋତେ ଦୁଇ ହଜାର ଟଙ୍କା ସାହାଯ୍ୟ କର, ଶିଶିର ଦରମା ପାଇଲେ ଶୁଝିଦେବ ।

ମିଶ୍ର—( ହସିଲେ ) ମୁଣ୍ଡ ବାଡ଼େଇ ଦେଲେବି ମୋ ପାଖରେ ତୁମେ କିଛି ପାଇବନି, କେବଳ ଘୃଣା ଅପମାନ ଆଉ ପ୍ରତିଶୋଧ କଥା ଛଡ଼ା ।

ସାବିତ୍ରୀ—ନନା ! ମୋ ଶିଶିର ବାହାଲେ ବଞ୍ଚିବନି ? ମୋର

ମିଶ୍ର— ଯାଅ, ବରଂ ଯୋଗେଶ ପଟ୍ଟନାୟକର ହାତଗୋଡ଼ ଧରି କିଛି ପାଇପାରିବ ।

ଯୋଗେଶ— ( କହ୍ଵକହ୍ଵ ଅସିଛନ୍ତି ) ଯୋଗେଶ ପଟ୍ଟନାୟକର ନାଁ ଭୁଲି ଯିବାକୁ କହୁଅଛ ମିଶ୍ରେ !

ମିଶ୍ର - ହେଃ ହେଃ ପଟ୍ଟନାୟକେ, ଦୁଃଖରେ ପଡ଼ିଛି ବିଚରା !

ସାବିତ୍ରୀ— ଗୋଟେ ବୋଲି ପୁଅ. ବାପ ତା'ର ଜେଲରେ, ଆପଣମାନେ ତାର ବାପ ହୋଇ ତାକୁ ବଞ୍ଚାଇ ଦିଅନ୍ତୁ ।

ଯୋଗେଶ—ହେଃ ହେଃ, ଏ ବୟସରେ ପୁଣି ବାପ ହେବାର ସୁଯୋଗ···? ଲଜ୍ଜା ନାହିଁ ତୁମକୁ ? ଏତେ ବଡ଼ ଝିଅଟାକୁ ଘରେ ରଖି ସାରାଗାଁଟାକୁ ନଷ୍ଟ କରି ଦେଲଣି ! ପୁଣି ପୁଅ ପାଇଁ ଭିକ୍ଷା କରୁଛ ? ପୁଅ ବି ତ ଖଣ୍ଡେ, କାହାରିକୁ ଖାତିର ନାହିଁ । ସେଭଳି ପୁଅକୁ ବଞ୍ଚାଇବାକୁ କିଏ କାହିଁକି ସାହାଯ୍ୟ କରିବ ?

ସାବିତ୍ରୀ—ମୋ ଘର ଖଣ୍ଡିକୁ ହେଲେ ନେଇ ମୋତେ କିଛି ଟଙ୍କା ଦିଅନ୍ତୁ । ମୋ ପୁଅକୁ ବଞ୍ଚାଇ ଦିଅନ୍ତୁ । ଆପଣ-ମାନଙ୍କ ଗୋଡ଼ ଧରୁଛି ।

ଯୋଗେଶ—ଘର ? ତୁମର ଘର କାହିଁ ?

ମିଶ୍ର—ହଜୁରେ, ସେଥି ଗୋଳମାଳ । ସେ ଘର ତ ପୌତୃକ ଦାବିରେ ସୁରେଶ ବାବୁଙ୍କର, ମାନେ ଖୋଦ ପଟ୍ଟନାୟକଙ୍କର ।

ସାବିତ୍ରୀ - କ'ଣ ହେଲା ? ଘର ମୋର ନାହିଁ ? ତାହେଲେ ପୁଅ ମୋର···(ଥକାପଡ଼ିଲେ)

ମିଶ୍ର—ହଇହେ ! ପଞ୍ଚନାୟକେ, ଦେଖୁଛନ୍ତନା ଏ ପଟରୁ କଳା ହାଣ୍ଡିଆ ମେଘ ଖଣ୍ଡେ ଯାଇ ଆକାଶଟାକୁ ଗିଳ ପକେଇଲାଣି ।

ଯୋଗେଣ—ଆରେ ହଁ, ସତତ, ଆମର ଚତୁର୍ଥୀଟାକୁ ଏ ମେଘ ନଷ୍ଟ କରିଦେଲା ।

ସାବିତ୍ରୀ—ପଞ୍ଚନାୟକ ବାବୁ ! ଆପଣଙ୍କ ଗୋଡ ଧରୁଛି, ମୋ ଶିଶିର ଜୀବନ ଆପଣଙ୍କ ହାତରେ···ବଞ୍ଚେଇ ଦିଅନ୍ତୁ ·· ଆପଣଙ୍କ ଯଶ ବଢ଼ିବ ।

ଯୋଗେଣ—ମୁଁ କ'ଣ ଭଗବାନ ? ଯାଅ, ଯାଅ ଡାକ୍ତରଙ୍କୁ ଗୋଡ଼ହାତ ଧରି କହିବ, ନହେଲେ ଝିଅଟାକୁ ସାଙ୍ଗରେ ନେଇଯାଅ । ତାକୁ ଦେଖିଲେ ଡାକ୍ତରମାନେ ବିନା ପଇସାରେ ସବୁ କରିଦେବେ ।

ଲତା—(ପ୍ରବେଶି) ବୋଉ !

ସାବିତ୍ରୀ—କିଏ ? ଲତା ! ମା' କଣ୍ଟ ପାଇଲୁ ?

ଯୋଗେଶ—ଆସହେ ମିଶ୍ରେ ! ତମେ ଗଲେ ତେଣେ ଚତୁର୍ଥୀ କାମ ହେବ ଯେ-

ମିଶ୍ର—ହଁ ଯିବା, ଆଜିତ ଅନେକ କାମ (ଯୋଗେଶ ଓ ମିଶ୍ର ) ଚାଲିଗଲେ )

ଲତା—ବୋଉ ! କାହିଁକି ସେମାନଙ୍କ ଗୋଡ଼ ଧରୁଥିଲୁ ?

ସାବିତ୍ରୀ—କୋଉଠୁ ଆଉ ମିଳିବ ଟଙ୍କା ?

ଲତା—ସେମାନଙ୍କଠାରୁ କ'ଣ ପାଇଲୁ ? କେହି ଦିହେଁବେନି ।

( ଆସିଛି ଅମର )

ସାବିତ୍ରୀ—ତାହେଲେ ଶିଶିର କ'ଣ··· ?

ଅମର –ମାଉସୀ ! ସେଭଳି ଲୋକଙ୍କୁ ସାହାଯ୍ୟ ମାଗିଲେ ମିଳିବନି, ତାଙ୍କଠୁ ଜବରଦସ୍ତ ଛଡ଼େଇ ଆଣିବାକୁ ହେବ ।

ଲତା – ଅମର ଭାଇ ! ହସ୍ପିଟାଲରେ…

ଅମର—ମୁଁ ତ ଫେରୁଛି । ଜଣେ ନର୍ସ ଭଲେଣ୍ଟିଅରିଲି ବ୍ଲଡ଼ ଦେଇଛି, ଇଞ୍ଜେକ୍‌ସନ୍ ଦିଆଯାଉଛି…ତଥାପି…

ଲତା—କ'ଣ ହେଲା ?

ଅମର—Sense ଆସୁନି-

ଲତା – ପୁଣି ?

ଅମର—ଡାକ୍ତର କହୁଛନ୍ତି କଟକ ଯିବାକୁ ପଡ଼ିବ ।

ସାବନ୍ତୀ—କଟକ ?

ଅମର ହଁ, ଆଜି ରାତି ଦଶଟା ସୁଦ୍ଧା କଟକ ବାହାରି ଯିବାକୁ ପଡ଼ିବ । Heartରେ accident ହୋଇଛି, ତେଣୁ… ଏଠି କିଛି କରିହେବନି ।

ଲତା – କ'ଣ କରିବା ?

ଅମର - ନହାତ କମ୍‌ରେ ପାଞ୍ଚଶହ ଟଙ୍କା ଦରକାର ।

ସାବନ୍ତୀ— ପାଞ୍ଚଶହ ! !

ଅମର - ବିନା ଟଙ୍କାରେ ମାଉସୀ, ହସପିଟାଲରେ କେହି ମୁହଁକୁ ଚାହିଁବେନି ।

ଲତା—ଅମର ଭାଇ ! ରାତି ଦଶଟା…ସୁଦ୍ଧା…

ଅମର –ତୁ ବ୍ୟସ୍ତ 'ହ'ନା, ଚେଷ୍ଟାକର୍, ମୁଁ କେବଳ ଜଣେଇ ଦେବାକୁ ଆସିଥିଲି । ଷୋହଳ ବର୍ଷା ଆସିଲାଣି । ମୁଁ ମାଉସୀଙ୍କୁ ହସପିଟାଲ ନେଇଯାଉଛି । ସେଠାରେ କେହି ଜଣେ ନ ରହିଲେ ମୁଁ ଏଣେ ତେଣେ ଯାଇ ପାରୁନି, ଟଙ୍କା

ପାଇଁ ସ୍ୱତମତ ଚେଷ୍ଟା କରିବାକୁ ହେବ । ମାଉସୀ ! ହସ୍‌ପିଟାଲରେ ·· ରହିଲେ···?

ସାବଶୀ – ମୁଁ ଯିବ···ଗୁଲ · ବାପା !

ଅମର – ହଁ, ଲତା ! ଇଂଦ୍ରଜିତ ପାଖକୁ ଗଲେ ହୁଏତ ଟଙ୍କା ମିଳିଯିବ, ତୁ ଟିକଏ କୋଉଠୁ ଚେଷ୍ଟାକର, ମୁଁ ହସ୍‌ପିଟାଲରେ ମାଉସୀଙ୍କୁ ଛାଡ଼ି ଆସୁଛି ।

ଲତା – ଅମର ଭାଇ ! ତୁମେ ଯାଅ, ମୁଁ ଚେଷ୍ଟା କରୁଛି ।

ଅମର – ଆସ ମାଉସୀ ! Bed ପ ଖରେ ଦେଖିବ ନାହାନ୍ତି ।

ସାବଶୀ ଠାକୁରେ କେବଳ ଭରସା ଗୁଲ । ଲତା, ଦେଖ୍ ମୁଁ ଆସୁଛି ( ଦୁହେଁ ଗୁଲଗଲେ )

ଲତା – ଇନ୍ଦ୍ରଜିତ ମହାନ୍ତି··· ? ଟଙ୍କା ଦେବ ? ଏ ଝଡ଼ ସ୍ରୋତ··· ଓଃ···ଭାଇଙ୍କ ଜୀବନ ବଞ୍ଚେଇବାକୁ ପାଞ୍ଚ ଶହ ଟଙ୍କା ଲୋଡ଼ା··· ହେ ! ମା ! ( ଝଡ଼ ଓ ଘଡଘଡ଼ି ଆକାଶକୁ ଘୋଟିଗଲେ । ଲତା କ'ଣ ଭାବ ଗୁଲଗଲ )

ଅନ୍ଧାର



## ॥ ପଞ୍ଚମ ଦୃଶ୍ୟ ॥

ଅମାବାସ୍ୟାର ଉତ୍କଟ ଅନ୍ଧକାର । ସମସ୍ତ ଘୋଡାଗ୍ର ଠକ୍ ଠକ୍ ଶବ୍ଦ । ଭୟଙ୍କର ଝଡ଼, ବର୍ଷା ଓ ଘଡଘଡିରେ ମଞ୍ଚ ଫାଟିପଡୁଥାଏ । ସମଗ୍ର ଅନ୍ଧକାର ଭିତରେ ବିଜୁଳିହିଁ କେବଳ ଭରସା । ଆସିଛନ୍ତି ସୁବୋଧ । ପୁଣି ମଦରେ ବୁଡ଼ିଯାଇଥା'ନ୍ତି । ସଂପୂର୍ଣ୍ଣ ବିବ୍ରତ ଓ ବିପର୍ଯ୍ୟସ୍ତ ।

ସୁବୋଧ—ଲତା ! ଏ ଲତା ! ମୁଁ ଠିକ୍ ଭୁଲିନି, ଏତେ ପିଇ ବି ତୋତେ ଭୁଲି ପାରୁନି । ଆଜି ମୋର ରାତିଟି । ଅନ୍ଧାର ଆଉ ଝଡ଼ ଭିତରେ ମୁଁ ତୋତେ ଖୋଜୁଛି ଲତା ! ତୁ କ'ଣ ନାହୁଁ ? ଏ ଘଣ୍ଟାକୁ ଏଇଠି ବଜେଇ ଦେବି, ଦେଖିବି, ଲଭ ନା ଲଜ୍ଜା ? ( ପିଇଲେ, ଝଡ଼, ଘଡ଼ଘଡ଼ି ସେମିତି ବ୍ୟସ୍ତରେ ଦୌଡ଼ୁଥା'ନ୍ତି । ଆସିଛି ଲତା । ବିପର୍ଯ୍ୟସ୍ତ କେଶ ବେଶ ଓ ମଳିନ ମୁହଁରେ ନିରାଶାର ସ୍ପଷ୍ଟ ସୂଚକ ଚିହ୍ନ । ବର୍ଷା ଓ ପବନ ମାଡରେ ସେ କ୍ଳାନ୍ତ ଓ ଅଣନିଃଶ୍ୱାସୀ । ସେ ବିଜୁଳିରେ ସୁବୋଧକୁ ଦେଖି ନେଇଛି କିନ୍ତୁ ଚିହ୍ନିପାରିନି—

ଲତା—( ଚମକିଉଠି ) କିଏ ?

ସୁବୋଧ—( ହସିଉଠିଲେ ) ! ଆଁ···! ମୁଁ ? ମୋର ପରିଚୟ ନାହିଁ ।

ଲତା—ସୁବୋଧ ଭାଇ ! ଏ ଝଡ଼ ଅନ୍ଧାରରେ···

ସୁବୋଧ—( ହସିଲେ ) ମଦର ଭୟ ନାହିଁ, ଅନ୍ଧାର, ଝଡ଼, ବର୍ଷା ସମସ୍ତେ ତାକୁ ଭୟ କରନ୍ତି ।

ଲତା—ସୁବୋଧ ଭାଇ ! ଆଜି ଘରି···

ସୁବୋଧ ଚଉଠି ? ମୋରନ ଲୁହେଁ, ସ୍ମାର ( ବୋତଲ )
ତାକୁ କହିଲ, ଖୁଲ୍ଲ କୁଆଡ଼େ ଯିବୁ ? କିଲ ନା ଲତା ?
ସେ ଝୁଲୁଛି, ମୁଁ ଝୁଲୁଛି ।

ଲତା—ସେ ସବୁ · ଭୁଲିଯାଅ · ସୁବୋଧ ଭାଇ !

ସୁବୋଧ—( ଜୋରରେ ହସି ଉଠିଲେ ) କେବଳ ଭୁଲିଯିବା ପାଇଁ ତ ମଦକୁ ମନେ ରଖିଛି ।

ଲତା—ସୁବୋଧ ଭାଇ ! ଗୋଟେ କଥା ରଖିବ ?

ସୁବୋଧ—ହଁ ? କଥା ? ଠିକ୍ ଅଛି, କହ

ଲତା—ଭାଇଙ୍କ କଥା ତ ଶୁଣିଥିବ, କଟକ ଯିବାପାଇଁ ଟଙ୍କା ଦରକାର । ମୁଁ ସବୁଆଡ଼ୁ ନିରାଶ ହୋଇ ଫେରିଲିଣି । ଆଜି ରାତି ଦଶଟା ସୁଦ୍ଧା ପାଞ୍ଚଶହ ଟଙ୍କା ଦରକାର, ନହେଲେ ··ଭାଇଙ୍କୁ ଆଉ ( କାନ୍ଦୁଛି )

ସୁବୋଧ—ଟଙ୍କା ? ମୁଁ ଦେବି, ଶିଶିର ପାଇଁ ନିଶ୍ଚୟ ଦେବି ।

ଲତା—ସୁବୋଧ ଭାଇ ! ତୁମ ଗୋଡ଼ ଧରୁଛି, ମୋତେ ଟିକଏ ସାହାଯ୍ୟ କର ।

ସୁବୋଧ—ମୋ ହାତ, ଘଣ୍ଟା, ମୁଦି ସବୁ କିଏ ନେଇଗଲେ । ତଥାପି ··ଏ ବୋତଲକୁ ନେଇ ପାରିଲେ ନାହିଁ । ମୁଁ ଆସେ । ଆଜି ଚଉଠି, ତୋ ସହିତ ଅନେକ କଥା ।

ଲତା - ସୁବୋଧ ଭାଇ ! ମୋର ଟଙ୍କା ଦରକାର ।

ସୁବୋଧ - ମୁଁ ଦେବି, ବୁଝିଲୁ । ମୁଁ ଆସେ ( ଝୁଲିଗଲେ, ଲତା ବ୍ୟସ୍ତ ହୋଇ ଏଣେ ତେଣେ ବୁଲିବାକୁ ଲାଗିଲା, ପରିସ୍ଥିତି ତାକୁ ବ୍ୟତିବ୍ୟସ୍ତ କରୁଥାଏ )

ଅମର—( Voice ) ଲତା ! ଆଜି ରାତି ଦଶଟା ସୁଦ୍ଧା ପାଞ୍ଚଶହ ଟଙ୍କା ଯୋଗାଡ଼ କରିବାକୁ ହେବ । ନହେଲେ

ଶିଶିରକୁ ବଞ୍ଚେଇ ଦେବନ । ତୁ ପ୍ରାଣପଣେ ଚେଷ୍ଟାକର ଶିଶିର ଜୀବନ ପାଇଁ ତୁ ଯେମିତ ଦେଲେ ଯେ ଗାଢ଼ କର । ( ଲତା ଫେରୁଛି )

ମିଶ୍ର –( Voice ) ହେଃ ହେଃ, ପାଞ୍ଚଶହ ଟଙ୍କା ? ତୁ ଯେଉଁ ଠେଡେଗ ଝିଅଟିକ ରଖିଛୁ ଗୋଟେ ରାତରେ ପସ ହଜାରେ ଟଙ୍କା ରୋଜଗାର କରିବୁ । ( ଲତା ପଛ ପାଖଳନ୍ତ, ଫେର ଆସିଲ )

ଅମର—( Voice ) ଲତା ! ତୋ'ର ହାତରେ ଶିଶିରର ଜୀବନ ବନ୍ଧା, ଟଙ୍କା ପାଇଁ ଜଣକ ଜୀବନ ଚୁଲ ଯିବନା ? ( ଆଖିରେ ଲୁହର ଶ୍ରାବଣୀ )

ଇନ୍ଦ୍ର—( Voice ) ନବିଡ଼ ଅନ୍ଧକାର ଭିତରେ ତୁମ ଓଠରୁ କଣ୍ଠ ଆଲୋକ ଚୁହେଁ ।

ଶିଶିର—( Voice ) ଶୋକର ନିଆଁରେ ଜଳଯା, ଦୁଃଖ ନାହିଁ, କନ୍ତୁ ଇଜ୍ଜତ ପାଇଁ ତୋତେ ବଂଶ ରକ୍ଷିବାକୁ ପଡ଼ିବ ।

ଲତା—କଣ କରିବ ? ଭାଇଙ୍କୁ କଣ ବଞ୍ଚେଇ ପାରିବନ ? ହେ, ପ୍ରଭୁ ! ଭାଇଙ୍କୁ ମୋର ବଞ୍ଚେଇ ଦଅ ! ( ଟଳା ଥର ଉଠିଛି, ଆସିଛି ଅମର ହତାଶାରେ )

ଅମର—ଲତା !

ଲତା—ଅମର ଭାଇ !......କ'ଣ, କଣ୍ଠ......?

ଅମର – ପାଇଲୁ

ଲତା—ନା

ଅମର—ବର୍ତ୍ତମାନ ତ ସାଢ଼େ ଆଠ ହେଲଣି କଣ କରିବା ମୁଁ ବ ବହୁତ ଅଡ଼େ ବୁଲ ଆସିଲି, ହେଲେ କେବଳ ବୃଥା ।

ଲତା—ସୁବୋଧ ଭାଇ କେବଳ ଭରସା ।

ଅମର—ଯାଇଥିଲି, ତା'ରତ ଆଜ ଚଉଠି । ତେଣୁ ତାକୁ ଖୋଜି ପାଇବା କଷ୍ଟ । ତଥାପି ବହୁତ ଖୋଜା ଖୋଜି ପରେ ବସ୍ତା କଡ଼ରେ ପଡ଼ିଥିବାର ଦେଖିଲି ।

ଲତା – ଏବେତ ସେ ମୋତେ ବଞ୍ଚେଇଲେ-

ଅମର – ସେ ମଦ ପିଇ ବେହୋସ, ତା ସାଙ୍ଗରେ ଆଉ କ କଥା ?

ଲତା – ଆଉ···କୋଉଠି ?

ଅମର ସବୁ ସାଙ୍ଗ ସାଥୀ ତିଆ ଅତଥିଙ୍କ ଠାରୁ ଫେରି ଆସିଲିଣି ।

ଲତା—( ଘନ ଶ୍ୱାସ ପ୍ରଶ୍ବାସ ) ତେବେ ···କ···ଣ ?

ଅମର—ଏ ଝଡ଼ ବର୍ଷା ବ ଆମକୁ କୁଆଡ଼େ ଘୁଞ୍ଚାଉନ ।

ଲତା – ସାରା ଗାଁରେ ସମସ୍ତଙ୍କଠି ହାତ ପତେଇଛି, ହେଲେ, ସବୁ ବ୍ୟର୍ଥ ।

ଅମର—ଆଜ୍ଞେ ସେ କଥା କ'ଣ କହୁଛୁ, ଇନ୍ଦ୍ରଜିତ ଭଳି ବନ୍ଧୁ ଭିତରେ ଥାଇ କବାଟ ବନ୍ଦ୍ କରିଦେଇଛୁ ।

ଲତା—ଏ ଝଡ଼ରେ ଆମ ପାଇଁ ସବୁର ଫାଟକ ବନ୍ଦ୍ ।

( ଏହି ସମୟରେ ପାଖ ଗିର୍ଜାରୁ ଦ'ଟା ବାଜିବାର ସୂଚନା ମିଳିବା ମାତ୍ରେ ସମସ୍ତେ ହଠାତ୍, ତତ୍ପର ହୋଇଉଠିଲେ )

ଅମର – ଲତା ! ଦ'ଟା ବାଜିଗଲା ।

ଲତା – ଆଉ ଗୋଟେ ଘଣ୍ଟା ।

ଅମର—ସେ ବ ସାଙ୍ଗେ ସାଙ୍ଗେ ଦୌଡ଼ିଯିବ ।

ଲତା—ଅମର ଭାଇ ! କ'ଣ କରିବା ? ଭାଇ କ'ଣ ବଞ୍ଚିବେନି ?

ଅମର — ଲତା ! ମୁଁ ଦେଖେଁ, ଯଦ ବୁଡ଼ା ଟ୍ରେଜେଗରୁ···
ହୁଏତ···ଶେଷ ଚେଷ୍ଟା କରିବ,· ମାଗିଲେତ ମିଳବନ,
ମୁଁ ଯାଉଛି । ମୋ ଉପରେ କଣ ଭରସା ରଖିବୁନ ? ତୁ
ଚେଷ୍ଟା କରୁଥା, ମୁଁ ଆସେ ।

ଲତା— ଅମର ଭାଇ ! ଶୀଘ୍ର ଫେରିବ !

ଅମର—ଆରେ ମୋତେ ପୁଣି କହୁଛୁ ?

ଲତା — ଶେଷ ବେଳରେ ଭାଇଙ୍କର ତୁମେହିଁ ଏକମାତ୍ର ବଂଧୁ ।

ଅମର ତୁ ଦେଖ୍, ଚେଷ୍ଟା କର, ମୁଁ just ଫେରୁଛି ।

( ଅମର ଚାଲିଗଲା, ଘଣ୍ଟର ଠକ୍ ଠକ୍ ଦେଖି ଲତା ହିଁ
ପାରୁ ନ ଥାଏ, ସେ କେବଳ ଏଣେ ତେଣେ ବୁଲିବାକୁ ଲାଗିଲା
କ'ଣ ଭାବିଲା, ହଠାତ୍ ଘର ଭିତରକୁ ଚାଲିଗଲା । ଝଡ଼ ଯେମିତ
ମଝି ରେ ମଝିରେ ଚିତ୍କାର କରୁଥାଏ । କିଛି ସମୟ ପରେ
ଫାଲଓଲ୍ ଶିଶିଟିକୁ ହାତରେ ଧରି ଆସିଲା । ଲୁହ ଗୁପରେ ଅଖି
ଯେତେବେଳକୁ ଫୁଲ ଯାଇଥାଏ, ଶିଶିଟିକୁ ଚାହିଁ କ'ଣ ଭାବିଲା )

ଶିଶିର—( voice ) ସାରା ଜୀବନର କ୍ଷୁଧା ଏଇଥିରେ
ଲିଭିଯିବ, ଲତା ! ତୋର ଇଜ୍ଜତ ଆମ ବଂଶର ଇଜ୍ଜତ ।

ଲତା—( voice ) ମୁଁ ପ୍ରତିଜ୍ଞା କରୁଛି ଭାଇ ! ସାରା ବଂଶର
କଳଙ୍କ ଢାଙ୍କିବା ଆଗରୁ ଏ ଫଲାଓଲକୁ ମୁଁ ସାଥୀ
ରୂପେ ବାଛି ନେଇଥିବ (ପୁଣି ଭାବନା )

ଲତାର ବିବେକ—( voice ) ଯେଉଁ ଭାଇର କଥା ପଦକ ରକ୍ଷା
କରିବା ପାଇଁ ତୁ ଏତେ ବାଟକୁ ଆଗେଇ ଯାଉଛୁ, ସେହି
ଭାଇର ଜୀବନକୁ ରକ୍ଷା କରିବା ପାଇଁ ତୁ କ'ଣ କରିଛୁ ? ଯା
ଭଉଣୀ ହୋଇ ଭାଇକୁ ରକ୍ଷା କର, ନଜେ ଜଳ ଅନ୍ୟକୁ

ବନ୍ଧା ଦେଖା, ଯା, ବୁଲିଯା ! ( ଲତାର ମୁଖମଣ୍ଡଳ ଆସ୍ତେ ଆସ୍ତେ ଦୃଢ଼ ହେବାକୁ ଲାଗିଲା )

ଇନ୍ଦ୍ର—( voice ) ଏ ପିଚୁ ଢଳା କଳା ଅନ୍ଧାର ଭିତରେ ଆମର ଏ କାହାଣୀ କୁଆଡ଼େ ଲୁଚିଯିବ ଲତା ! Please come on for a moment ( ବାରମ୍ବାର voiceର ଖାଲି ଝଙ୍କାର ଭିତରେ ଲତା ଧୀରେ ଧୀରେ ଦୃଢ଼ ହେବାକୁ ଲାଗିଥାଏ, ଏହି ସମୟରେ ବାହାରୁ ଆସିଲେ ଇନ୍ଦ୍ରଜିତ ଖୁସି ମନରେ )

ଇନ୍ଦ୍ର—କ'ଣ, ଲତା ! ଟଙ୍କା ଯୋଗାଡ଼ ହେଲା ?

ଲତା—ନାହିଁ......

ଇନ୍ଦ୍ର—ଆଉଚ ବୋଧହୁଏ ସମୟ ଖୁବ୍ ଅଳ୍ପ ।

ଲତା—Sir, ଆପଣଙ୍କ ଗୋଡ଼ ଧରୁଛି ମୋତେ କ୍ଷମା କରନ୍ତୁ ।

ଇନ୍ଦ୍ର—କେବଳ ସେଇଥିପାଇଁତ ଏ ନର୍ଦ୍ଦମ ଘରେ ଏଠିକୁ ଆସିଛି...ପୁଣି-ଶେଷ ସମୟରେ...

ଲତା—Sir, କେବଳ ଦୁଇ ଦିନ ପାଇଁ ମୋତେ ପାଞ୍ଚ ଶହ ଟଙ୍କା ଦିଅନ୍ତୁ ।

ଇନ୍ଦ୍ର—( ପିଠି ହସି ) ଦୁଇ ଦିନ ଭାବିକ, ସବୁଦିନ ପାଇଁ ଦରକାର, କନ୍ତୁ... ...

ଲତା—Sir ମୋ ଘର ବଞ୍ଚିବେନ । ( ଗୋଡ଼ ଧରନ୍ତି )

ଇନ୍ଦ୍ର—ଲତା ! ମୁଁ ବହୁତ ଥର କହିଛି, ନିଶ୍ଚୟ ଟଙ୍କା ଦେବି, କିନ୍ତୁ ମୋ ସର୍ତ୍ତ .. ...

ଲତା—Sir, ମୋତେ ଟିକଏ ଦୟା କରନ୍ତୁ, ମୋର ସର୍ବସ୍ୱ ବୁଲିଗଲେ ମୁଁ ଦୁନିଆରେ... ...

ଇନ୍ଦ୍ର—ମୁଁ ତ ବାଧ କରୁନ, ଝଙ୍କା ଓକମଯ୍ରରେ ମୁଁ ସୁନ୍ଦେ ଭୁମକୁ ।

ଲତା - ( ଅପଦାପ୍ ହୋଇ ) ମୋ ଭାଇଙ୍କ ଜୀବନ···Sir !

ଇନ୍ଦ୍ର—ଭାଇର ଜୀବନ ପାଇଁ ସାମାନ୍ୟ କେଇଟା ମୂହୂର୍ତ୍ତ ଆଖି ବୁଜ ଦେଇ ପାରୁନ ?

( ଲତାକୁ ଖୁବ୍ ବାଧିଲା, କିନ୍ତୁ ସମସ୍ତ ଅଉବରେ ଓ'ଣ ସ୍ପନ୍ଦଲା, ଇନ୍ଦ୍ରଜିତ ସିଗାରେଟ୍‌କୁ କେତେ ଥର kiss ଦେଇ ନିଃଶେଷ କରିଦେବାରେ ବ୍ୟସ୍ତ । ହଠାତ୍ ଗୀର୍ଜା ଘଣ୍ଟାରୁ ଅନ୍ତ ଏକ ବୁଲେଟ ଆସି ଲତା କାନରେ ବାଜିଲା, ସେ ବ୍ୟସ୍ତ ଓ ଚଞ୍ଚଳ ହୋଇ ଉଠିଲା )

ଇନ୍ଦ୍ର—It is half past nine. ସାଢ଼େ ନଅ,

ଲତା ( ସୁଣଅଡ଼୍ ଥରେ ନିସ୍ପଣାଭ କରୁଣ ଦୃଷ୍ଟି ଫେରାଇ ଅଣି ଆକାଶକୁ ଚାହିଁଲା ଏବଂ ଦୃଢ଼ ହୋଇ କବାଟ ଆଡ଼କୁ ପଲେଇ ଗଲା ) ମଣିଷ ପାଇଁ ମଣିଷର ସାହାଯ୍ୟ—ତୁଏତ କେହି ମନେ ରଖିବେ । ( କବାଟ ପାଖକୁ ଯାଇଯାଇଥାଏ, ଦୃଢ଼ କଣ୍ଠରେ ) ଆସନ୍ତୁ !

ଇନ୍ଦ୍ର—( ଖୁବ୍ ଖୁସିରେ ଘଡ଼ି ଦେଖି ) ସମସ୍ତ ଖୁବ୍ କମ୍ !

( ଇନ୍ଦ୍ରଜିତ ଭିତରକୁ ଗଲେ କବାଟ ବନ୍ଦ ହେଲା, ଘଡ଼ଘଡ଼ିଟା ସାରା ଆକାଶଟାକୁ ଫଟେଇ ଦେଲା । ଝଡ଼, ବର୍ଷା, ବଜୁଳି ସମସ୍ତେ ପୃଥିବୀ ଉପରକୁ ତେର୍ଛି ପଡ଼ିଲେ । ତା ସାଙ୍ଗକୁ ଭୟଙ୍କର ଯନ୍ତ୍ର ସଙ୍ଗୀତ ସମ୍ପ୍ରସାରଣ ଘୂର୍ଣ୍ଣିବାତ୍ୟା ଭିତରେ ସମସ୍ତଙ୍କୁ ହଜେଇ ଦେଲା, ଏହି ସମୟରେ ସେହି ପୁରୁଣା ଗୀତର ଶେଷ ପଦ ଖୁବ୍ ମନ୍ଥର ସ୍ୱରରେ··· ··· ··· ··· ·· ··· ··· ··· —

··· ··· ··· · ଯଉ ଯାଇଛୁ ଶୀତ, ଥମି ଯାଇଛୁ ଝଡ଼, ଖୋଲ

ଯାଉଛନ୍ତି ବାହାରେ, ଇନ୍ଦ୍ରଜିତ ସିଗାରେଟ ଧୂଆଁରେ ମୁହଁକୁ ଲୁଚେଇ 'ଟୋଷ୍ଟ ପିନ୍ଧିଲେ ଓ ଖଣ୍ଡିଆ ସିଗାରେଟକୁ ପାଦତଳେ ଘୃଷିଦେଇ ବାହାର ଯାଉଥାନ୍ତି— ବାହାରୁ ଆସିଲେ ଅମର, ହାତରେ ଗୋଟାଏ ନୋଟ, ଭିତରୁ ଅସଜଡ଼ା ଶାଢ଼ୀ ଓ ମୁକୁଳା କେଶ ଗୁଣିକୁ ସମୁଳ କଣ, ହାତରେ ଟଙ୍କା, ଆଖିରେ ଲୁହଭରି, ଅଗଳ ପାଦରେ ଆସିଲ ଲତା । ଅମର ଆଶ୍ଚର୍ଯ୍ୟରେ ଗୁହଁଥାଏ ଲତାକୁ, ଇନ୍ଦ୍ରଜିତ କ୍ଷିପ୍ର ବେଗରେ ଚାଲିଗଲେ—

ଅମର—(ଖୁବ୍ ଆଶ୍ଚର୍ଯ୍ୟରେ ) ଏ କଣ, ଲତା !

ଲତା - ହଁ, ( ଖଣ୍ଡିଆ ସିଗାରେଟ ଉଠାଇ ) ମୋ ଜୀବନ ( ଲୁହ ଗଳା ଚପିଦେଲା )

ଅମର - ତୁ କଣ କଲୁ ଲତା ! ଟିକଏ ଅପେକ୍ଷା କରିଥିଲେ··· ମୁଁ ଚେଷ୍ଟା କରି ହଜାରେ ଟଙ୍କା ନେଇ ଆସିଛି ।

ଲତା—ଅମର ଭାଇ ! ଏଥର ଭାଇ ବଂଚିବେତ ?

ଅମର— ଲତା ! ତୋ ଭଳି ଭଉଣୀ ପାଇଁ ଶିଶିର ନିଶ୍ଚୟ ବଂଚିବ । କିନ୍ତୁ ଇନ୍ଦ୍ରଜିତ ମହାନ୍ତି

ଲତା— କେବଳ ମୋ'ର ପାଇଁ ତାଙ୍କର ଏତେ ଗୁଡ଼ାଏ ଅଭିନୟ ।

ଅମର— ମୁଁ କଣକରୁ ଫେରି ଆସେ ।

ଲତା—ଅମର ଭାଇ ! ମୋର ଗୋଟେ କଥା ରଖିବ ?

ଅମର—ଲତା ! ତୁ ତ ଜାଣୁ ମୋର ଭାଇ ଭଉଣୀ କେହି ନାହାନ୍ତି । ପିଲାଟି ବେଳୁ ଆମେ ଏକାଠି 'ଭାଇ ଭଉଣୀ ହୋଇ ଚାଲି ଆସୁଛୁ । ତୋ କଥା ରଖିବିନି ? କହ !

( ଆଖିରେ ଲୁହ )

ଲତା—ତୁମ ଆଖିରେ ବି ଲୁହ !

ଅମର – ନା ନା ସେ କଣ୍ଟ ନୁହେଁ, ତୁ କହ ।
ଲତା – ତୁମେ ପ୍ରତିଜ୍ଞା କରି ପାରିବ ?
ଅମର କଣ ପାଇଁ ?
ଲତା –... ଯେମିତି ତୃତୀୟ ବ୍ୟକ୍ତି ନଜାଣେ ।
ଅମର – ମୁଁ... ପ୍ରତିଜ୍ଞା କରୁଛି । ( ଏହି ସମୟରେ ହସି ହସି ହାତରେ ସୁନାହାରଟିଏ ହଲାଇ ହଲାଇ ଆସିଛନ୍ତି ସୁବୋଧ )
ସୁବୋଧ—ଲତା ! ଆଜ ଏ ବର୍ଷାରେ ଟିକଏ ବେଶି ପିଇଦେଲି, ଭୁଲିଗଲି । ତୋତେନୁହେଁ, ତୋ କଥା, ଫେରିବା ପିଇଲି, ମନେ ପଡ଼ିଲା, ଶଳା କିଲି ଦେଲାନ ତୋ ଟଙ୍କା । ଏଇ ହାରଟା ତା ଦେକରେ ଥିଲା । ଧରିଲି, ଛୁଣ୍ଡ ଇ ଅାଣିଲି ନେଇଯା
ଲତା – ସୁବୋଧ ଭାଇ ! ( କାନ୍ଦ ପକେଇଲା )
ଅମର – ଲତା ! ସମସ୍ତ......(- ଲତା! ଟଙ୍କା ଦେଲା । ଅନ୍ଧାରରେ ଗୀର୍ଜା ଘଣ୍ଟାରୁ ୧୦ଟା ବାଜିବାର ସୂଚନା )

—୦—

## ॥ ଷଷ୍ଠ ଦୃଶ୍ୟ ॥

...... ସହର ରାସ୍ତା, ଅପରାହ୍ନ, ଶଙ୍କର ଭଦ୍ର ବେଶରେ ନଗଣ ହେଇ ଆସିଲା–

ଶଙ୍କର - ଯୁଗ ଖରାପ ହୋଇଗଲା ହୋ ! ଏ ଟୂକାଗୁଡା ଆଉ ମଣିଷ ମାନଲେନ ସିନେମା ପାଖରେ ସେ କି କାଣ୍ଡ ? ଛୁଆ ମଦ୍ଦମର, ବାପ୍‌ରେ ବାପ୍ ! ( ଏହି ସମୟରେ ଅସିଛ ମହୁଣ, ଆଖିରେ ଚଷମା, ହାତରେ ଛତା, ଗୁରବୂର ମାମଲତକାର, ପାନ ଖାଇ ପାଟିରୁ ଛେପ ବୋହି ପଡ଼ୁଥାଏ ।

ଶଙ୍କର—କହୋ ! ସମୂଙ୍ଗ ! ଜ୍ୱାର !

ମଦ୍ଦୁଶ୍ୱ—ଜ୍ୱାର, ଜ୍ୱାର !

ଶଙ୍କର—ଖାନ ଆଉ ବଜାରରେ ଅଛୁ ନା ନାହିଁ ?

ମଦ୍ଦୁଶ୍ୱ—ଆଁ ? ମନ ? ଏଇ ମଣ ବୃନ୍ଦାବନ, ଏଇମନ କାଶୀ, ଏଇମନ ବଦ୍ରୀନାଥ, ପୁଣ୍ୟ ବାରଣାସୀ ।

ଶଙ୍କର—ବାଃ ବାଃ, ସାବାସ୍ ସମୂଙ୍ଗ !

ମଦ୍ଦୁଶ୍ୱ - ଆଉ ? ବୋଧୁ ମୋର ପ୍ରଶ୍ନ ପଡ଼ି ଶିଖେଇଛୁ ନା ।

ଶଙ୍କର—ହଁ, ହଁ, ମୁଁ କ'ଣ ମନା କରୁଛୁ ?

ମଦ୍ଦୁଶ୍ୱ – ସୀତା ଠାକୁରାଣୀଙ୍କି ଚୋର କରି ରାବଣ ମଲା । ଦ୍ରୁପଦଙ୍କି ଅପମାନ କରି କୁରୁବଂଶ ଧ୍ୱଂସ ହେଲା । ଆଉ ଏ ଟୁକାଗୁଡ଼ା ଝିଅ ବୋହୁଙ୍କୁ ଅପମାନ କରି ଶେଷରେ ଚୋର ମାଂଚାଲ ସାଜ କସଗୁଟେ ହେପିକାବାଜୀ ହେଲେଣି ।

ଶଙ୍କର – ହଁ, ହଁ, ଦେଖୁନା, ଖାଲି ଲମ୍ବା ଲମ୍ବା ବାଳ-

ମଦ୍ଦୁଶ୍ୱ—ଗାଁ ସହର ସବୁଆଡ଼େ ମାଙ୍କଡ଼ ଲୀଳା-

ଶଙ୍କର—ଗ୍ଲୁକୁ ଚୁଲିର ଧାର କଷାକଷି ।

ମଦ୍ଦୁଶ୍ୱ—ଆଉ ଏ ଟୋକାଗୁଡ଼ା କସ ଜମକ ?

ଶଙ୍କର—ହାଁ ହାଁ ଚୁପ୍ ! ଚୁପ୍ ! ମାଉ ଉଦେଇଦେବ । ଏଇଟା ସିନେମା ।

ମଦ୍ଦୁଶ୍ୱ—( ଶୁଣି ନ ପାରି ) ସନାମା ? କୁହନା ସମୁଙ୍ଗ, ସନାମାର ଭାଗ୍ୟରେ ନାହିଁ । ନହେଲେ ଆମର ଏ ସୁଖ ବେଳରେ ସେ ନ ଥାନ୍ତା ?

ଶଙ୍କର—ଓହ ··ସନାମା ନୁହେଁ, ସିନେମା ସିନେମା ।

ମନ୍ତ୍ରଶ୍ରୀ—ଓ କଣ ଦେଖିବା ?

ଶଙ୍କର—ବାପ୍ ରେ ବାପ୍ ! ଏ ଛୁଆ ମଗମର ଭିତରେ ଫେର୍ ସିନେମା ଦେଖିବା ?

ମନ୍ତ୍ରଶ୍ରୀ—ନା ନା ଥାଉ, ଚାଲ ବରଂ ମଠରେ ବସି କୀର୍ତ୍ତନ କରିବା । ଶେଷବେଳରେ ଠାକୁରଙ୍କ ପାଦତଳେ ଘଣ୍ଟେ ଦ'ଘଣ୍ଟା ଦୁଃଖ ଜଣେଇବା ?

ଶଙ୍କର—ହଁ ହଁ, ସେଇଆ ହେଉ, ଏ ବଜାର ଖାଲି ମିଛ ମାୟାର ହାଟ, ସେଣ୍ଟ ମଠରେ ବରଂ ଶାନ୍ତି ଅଛି ।

( ଏହି ସମୟରେ ବାହାରୁ ମନ ଖୁସିରେ ଆସିଛନ୍ତି ସୋମନାଥ, ଜେଲ୍ ରୁ ଫେରିଛନ୍ତି ହାତରେ ମିଠେଇ ପୁଡ଼ିଆ )

ସୋମ— କିରେ, ଶଙ୍କର ! ମନ୍ତ୍ରଶ୍ରୀ !

ଶଙ୍କର-ମନ୍ତ୍ରଶ୍ରୀ—ଆଜ୍ଞା ! ଜୁହାର !

ସୋମ—ଜୁହାର, ନଅରେ ମିଠେଇ ଖାଅ !

ଶଙ୍କର - କଣ ହେଲା କି ଆଜ୍ଞା !

ସୋମ—ତମେ ଆଜ ମୁହଁ ମିଠାକର, ( ଦେଲେ ) ଆରେ ମୁଁ ସିନା ଥିଲି ଜମାଦାର, ମୋ ପୁଅ ଆଜଠାରୁ S. I. ହେଲେ ଜମାଦାର ତାଙ୍କୁ ସାଲ୍ୟୁଟ ବଜେଇବେ ।

ଶଙ୍କର - ଯାହାହେଉ, ଠାକୁରେ ଗଡ଼ବକୁ ସାହା, ଆପଣଙ୍କ ଦୁଃଖ ସରିଗଲା ଆଜ୍ଞା !

ସୋମ -ଠିକ୍ ବାଟରେ ଚାଲିଥିଲେ ଦୁଃଖ ଆପେ ଆପେ ଚାଲିଯିବ ଶଙ୍କର !

ମନ୍ତ୍ରଶ୍ରୀ—ଆପଣ ଗଲା ପରେ ପରେ ଆମେ ଆସି ପହଞ୍ଚରେ ଅଛୁ ।

ସୋମ - ଗାଁ ! ଛାଡ଼ି ଦେଲ ?

ଶଙ୍କର— କ'ଣ ଆଜି କରିବା ? ସେ ମିଶ୍ର ବୁଢ଼ା ଜନ୍ମାରେ ଅନେକ ଲୋକ ଏମିତ ଜାଗା ଛାଡ଼ି ଚାଲି ଆସିଲେଣି ।

ସୋମ – ଠିକ୍ କଥା, ମନ୍ତ୍ରସ୍ୱଠୁ ଖବର ପାଇ ସେ ଦିନ ମୁଁ ଯାଇଥିଲି, ଗୋଡ଼ାର ଅପରାଧ ଜାଣିବା ପାଇଁ, କିନ୍ତୁ ସେଇ ଦେଉ ମିଶ୍ର ମୋତେ ଓଲଟା କୋର୍ଟରେ ପକେଇ ସର୍ବସ୍ୱାନ୍ତ କରିଦେଲା ।

ଶଙ୍କର— ବାବୁ ! ଆମେ ହରିଜନମାନେ ଅଣ୍ଟା ଭିଡ଼ିଲୁଣି, ତାକୁ କ'ଣ ସହଜେ ଛାଡ଼ିବୁ ?

ସୋମ— ନା, ସେ ବୁଢ଼ାକୁ ଉଚିତ ଶାସ୍ତି ଦେବାକୁ ହେବ । ଆଗୁ ମୁଁ ଗାଁକୁ ଯାଏଁ, ଅବସ୍ଥା ଦେଖି ତୁମକୁ ଜଣେଇବି, ପୁଅତ ମୋର S. I ଆଉ ଡର କାହାକୁ ?

( ହସି ହସି ଚାଲିଗଲେ )

ମନ୍ତ୍ରସ୍ୱ— ଆମକୁ ଟିକିଏ ଦୟା ରଖିଥିବେ ଆଜ୍ଞା !

ସୋମ— ( ବାହାରୁ ) ଠାକୁରଙ୍କ ଉପରେ ଭରସା ରଖ, ସେ ସବୁ ବିଚାର କରିବେ ।

ଶଙ୍କର – ରଙ୍ଗପାଟଣା ଗାଁ'ର ଲୋକ ଜଣେ । ଟିକିଏ ହେଲେ ବ ଗର୍ବ ନାହିଁ ।

ମନ୍ତ୍ରସ୍ୱ – ହଁ, ହଁ ତା ନହେଁ ତ ଆଉ କ'ଣ ? କଥାରେ ଅଛି, ଖଣ୍ଡି ଯେ ଖଣ୍ଡି ଚୋର ପଞ୍ଜୁରୀ କାଟି, ଖାଉଣ ଥିବେ ଶ୍ୱାନ ଶୃଗାଳ ବାଣ୍ଟି । ଅରେ ହସୁଛୁ କ'ଣ ? ସଭିଏଁ ସେଇ ଶିଆଳ ପାଟିରେ ପଡ଼ିବା ।

ଶଙ୍କର— ହଉ, ଏଥର ଆସ, ସଞ୍ଜ ହୋଇଗଲା । ( ଚାଲିଗଲେ )

ଅନ୍ଧାର

## ॥ ସପ୍ତମ ଦୃଶ୍ୟ ॥

ସକାଳର ସୂର୍ଯ୍ୟ ଗତ ରାତ୍ରୀର କଳା ଅନ୍ଧାରକୁ ଧୋଇ ଧୋଇ ସାରା ପୃଥିବୀଟାକୁ ସୁନା ଜଳରେ ରଙ୍ଗେଇ ଦେଇଥାଏ । ଦୁଆରର ପାହାଚ ଉପରେ ଅଶ୍ରୁଳ ନୟନରେ ବସି ଲତା ଅତୀତକୁ ରୋମନ୍ଥନ କରୁଥାଏ । ନାଇଟ କଲବାପରେ ଦେଖାଗଲା, ଯୋଗେଶ ପଞ୍ଚନାୟକ ରାତର ଶେଷ ସୀମାରେ ପହଞ୍ଚି ପଣ୍ଟୀକୁ ପିଟି ଚାଲିଥାନ୍ତି ନିର୍ମମ ଭାବରେ । ଲତା କିନ୍ତୁ ନିର୍ବିକାର ହୋଇ ବସିଥାଏ ଠିକ୍ ଯେମିତି ଗୋଟେ କାଠ କଣ୍ଢେଇ । ପାଟି ଶୁଣି ଶୁଣି ଅଣ୍ଡାଳ ଅଣ୍ଡାଳ ଆସୁଥାନ୍ତି ସାବିତ୍ରୀ । ଲତା ! ଲତା ! ଡାକ ଡାକ—

ଯୋଗେଶ—ବଦମାସ୍ ! ଆଉ ଆସିବୁ ? ( ବାରମ୍ବାର କହୁଥା'ନ୍ତି ଏବଂ ପିଟୁଥାନ୍ତି )

ପଣ୍ଟୀ- ଉଃ···ଆଃ·· ମୋତେ ଛାଡ଼ିଦିଅ ବାପା !

ସାବିତ୍ରୀ- ସମ୍ପତ୍ତି, ପିଲାଟାକୁ ଆମ ଆଗରେ ଏମିତି ମାରନା !

ଯୋଗେଶ - ନା ତୁମକୁ ଡରିବ ? ତୁ ଯିବୁ କି ନାହିଁ ? ବଦମାସ୍ ! ମୋ ନାଁ ଟାକୁ ମାଟିରେ ମିଶେଇ ଦେଲୁଣି, ଚାଲ, ଦୁଷ୍ଟ !

ପଣ୍ଟୀ - ବାପା ! ମୋତେ ଛାଡ଼ିଦିଅ, ମୁଁ ଯିବି ।

ସାବିତ୍ରୀ—ଯାଆରେ, ବାପା ! ତୁମଘରେ ଖୁସିରେ ରହିବୁ ।

ପଣ୍ଟୀ—ଆଈ ! ମୁଁ ଯାଉଛି !

ଯୋଗେଶ—ଚୁପ୍ କର, ଚାଲ୍ ଘରକୁ ! ( ଟାଣି ନେଲେ ଏହି ସମୟରେ ଅସିଛନ୍ତି ସୋମନାଥ ମିଠେଇ ନେଇ ମନଖୁସିରେ )

ସୋମ—( ଫଣୀକୁ ଦେଖି ଖୁସିହେଲେ ) ଅରେ, ଦମ୍ପତି ! ନମସ୍କାର, ଫଣୀ ! ନେ'ରେ ମିଠେଇ ନେ । ତୋ ପାଇଁ ଚାକରି ପାଇଯାଇଛୁ । ( ଫଣୀ ମିଠେଇ ପାଇଁ ହାତ ବଢ଼େଇଲା, କିନ୍ତୁ ମିଠେଇ ନେବା ପୂର୍ବରୁ ଯୋଗେଶ ତାକୁ ଟାଣି ନେଇଯାଇଥିଲେ )

ଫଣୀ—( ବାହାରୁ ) ଅଜା !

ଯୋଗେଶ—( ବାହାରୁ ) ଚୁପ୍ କର !

ସାବିତ୍ରୀ—ଓଃ କି ନୃଶଂସ !

ସୋମ—ଫଣୀ ! ..... (ଆଶ୍ଚର୍ଯ୍ୟ ହୋଇ ରହିଥିଲେ )

ସାବିତ୍ରୀ—ଛାଡ଼, ସେମାନେ ବଡ଼ଲୋକ ।

ସୋମ—ହଁ ତାଙ୍କ ପିଲା ଉପରେ ଜୋର ନା ଜୁଲୁମ ?

ସାବିତ୍ରୀ - ତମେ...... ! କେମିତି...... ?

ସୋମ—( ହସି ) ଦେବେଶ ମହାପାତ୍ର, D. I. G ଏଇଠି S. P. ଥିଲେ । ମୋତେ ସେ କେତେ ଭଲ ପାଆନ୍ତି, ତୁମେ ତ ଜାଣ, ସେ ଆସିଥିଲେ ଜେଲ୍ Inspectionରେ ମୋ ସହିତ ଦେଖା ହେଲା । ମୋର ଅବସ୍ଥା ଶୁଣି ସେ ଦୁଃଖ ପାଇଲେନ । ଶିଶିର କଥା ପଚାରିଲେ, ସେ ତ Interview ଦେଇଥିଲା, ମୁଁ ପଦେ କହିଲି । ହାତେହାତେ appointment letter ଧରେଇ ଦେଲେ । ସୁରେଶ ବି ଏଣେ ସବୁ ଦୋଷ ନିଜ ଉପରକୁ ନେଇ ମୋ ସପକ୍ଷରେ ଜମାନବନ୍ଦୀ ଦେଇଥା'ନ୍ତି । ତେଣୁ ମୋ ଖଲାସ ହେବାରେ କୌଣସି ଅସୁବିଧା ହେଲାନି । ଯାହା ହେଉ, ଏତେ ଦିନ ପରେ ଶିଶିରକୁ ଚାକରି ଖଣ୍ଡିଏ ମିଳିଯାଇଛି ।

ସାବିତ୍ରୀ— ( ପାର୍ଶ୍ୱସ୍ଥିତ ଘରେଇଦେଇ ଫେରି ଯାଉଥିଲେ, ସୋମନାଥ ଲକ୍ଷ୍ୟକରି ପାରି ନାହାନ୍ତି, ଲତାକୁ ଦେଖି )

ସୋମ—ଆରେ, ଲତା ! କରେ, କାନ୍ଦୁଛୁ କାହିଁକି ? ନେ, ମିଠାଟିଏ ଖା । ଶିଶିର ସବ୍‌ଇନସ୍‌ପେକ୍ଟର ଚାକିରି ପାଇଛି । ଏଥର ଆଉ ଗୃହର ମୁଠେ ପାଇଁ ହାତ ପାତିବାକୁ ପଡିବ ନାହିଁ । ମୁଁ ଥିଲି ଜମାଦାର । ବର୍ତ୍ତମାନ କେତେ ଜମାଦାର ମୋ ପୁଅକୁ ସଲାମ କରିବେ । ଆରେ! ଶିଶିର କାହିଁ ? ଶିଶିର ! ଶିଶିର ! ( ଖୋଜିଲା ଆଖିରେ ଏଣେତେଣେ ଚାହିଁଲେ ) ଚିନ୍ତା କରନା ବାପା ! ଏଣିକି ତୋ ଦୁଃଖ ତୁଟିଗଲା । ଯେଉଁମାନେ ତୋ ମୁହଁକୁ ଚାହୁଁ ନ ଥିଲେ, ସେମାନେ ଅଳ କାଠ ଗୁଡ଼ଦେବେ । ଲତା ! ତୁ ଚୁପ ହୋଇ ବସିଛୁ କାହିଁକି ? କ'ଣ ? କଥା କ'ଣ ସାବିତ୍ରୀ ! ଏତେ ଖୁସିର ଦିନରେ ସବୁ କାନ୍ଦୁଛ କାହିଁକି ? ଶିଶିର କାହିଁ ? କୁହ ! ( ସାବିତ୍ରୀ କିଛି ନ କହି ଚାଲି ଯାଉଥିଲେ, ଲତା ମଧ୍ୟ ଉଠିଥିଲା ) ଲତା!, କହ, ମୋ ଶିଶିର କାହିଁ ? ( ଲତା କିଛି ନ କହି ଚାଲିଯାଉଥିଲା, ବାହାରୁ ଠକ୍ ଠକ୍ ଶବ୍ଦ ଶୁଣି ଅଟକିଗଲା । ଅଶ୍ରୁଳ ନୟନରେ ସୋମନାଥଙ୍କ ସହିତ ବାହାରକୁ ଚାହିଁଲା । ବାହାରୁ ଆସିଲେ ଶିଶିର । Train accidentରେ ତାଙ୍କ ବାମ ଗୋଡ଼ କଟି ଯାଇଥାଏ । ମୁହଁ ଛେଚ ପୋଡ଼ା କଳା ପଡ଼ିଯାଇଥାଏ । ଅଥଚ ସେ ସୁନ୍ଦର ହସ ହସ ମୁହଁଟି ସବୁବେଳେ ରୁକ୍ଷ ଦେଖା ଯାଉଥାଏ । ଲୁହ ଧାର ଆଖିକୁ ଫୁଲେଇ ଦେଉଥାଏ । ବାପାଙ୍କୁ ଦେଖି ସେ ଜୁହାର ହେବାକୁ ହାତ ଉଠେଇଲା । ସାବିତ୍ରୀ ସେତେବେଳକୁ ଲୁହ ପୋଛି ଭିତରକୁ ଚାଲିଯାଇଥା'ନ୍ତି ।)

ସୋମ—( ଶିଶିରକୁ ଦେଖି ) ଏ କ'ଣ ?

ଲତା—( ମୁଣ୍ଡ ହଲେଇ କେବଳ ଅସ୍ପଷ୍ଟ ସ୍ୱରରେ 'ହଁ'ର ସୂଚନା ଦେଲ )

ସୋମ—( ମିଠେଇ ଖସିପଡ଼ିଲା ) ଶିଶିର ! ଏ କ'ଣ ହେଲା ବାପା !

ଶିଶିର—Train accident··· ··· ···

ସୋମ—ତୁ ମୋତେ ଆଉ ସେ ଟ୍ରେନ ଚାଳକୁ ଫିଲ୍ମ । ଯାହା ହେବାର କଥା ହେଲଣି । ନେ, ତୋର ଦୁଃଖର ଦିନ ଯାଇଛୁ । ମୁଁ appointment letterଟା ସଙ୍ଗରେ ନେଇ ଆସିଛି । ଦେଖ୍ ସବ୍‌ଇନସ୍‌ପେକ୍ଟର ଗୃହର । ତୋତେ ଏବେ ସବୁଠେ ଲୋକ ସମ୍ମାନ କରିବେ । ( ଶିଶିର ଅଶ୍ରୁଳ ନୟନରେ appointment letterକୁ ଦେଖୁଥିଲେ । ସୋମନାଥ ବିଜୟ ଗୌରବର ହସରେ ମଜ୍‌ଗୁଲ । ହଠାତ୍ ଲତାର ଅବିରତ ଅଶ୍ରୁ ଦେଖି ତା ନିକଟକୁ ଚାଲିଗଲେ ) କହେ, ମା ! ତୁ ଆଉ କାନ୍ଦୁଛୁ କାହିଁକି ? ଏଁ ! କ'ଣ ଆଉ ଅସୁବିଧା ? ( ହଠାତ୍ ମନେ ପଡ଼ିଯିବାରୁ ସେ ଶିଶିରକୁ ଚାହିଁଲେ ଏବଂ ଆକସ୍ମିକ ଭାବରେ ଭାଙ୍ଗି ପଡ଼ିଲେ ) ଆରେ ··ସଚେତ·· ଶିଶିର ! ଗୋଟା··· ଗୋଡ଼··· ବଡ଼ଲୋକ···ପୋଲିସ ପାଇଁ·· ଯୋଗ୍ୟ ନୁହେଁ··· ନେବେ···ନେବେ··· ନେ··· ( ତଳେ ପଡ଼ିଗଲେ )

ଲତା—ବାପା ! ! ! ( ଚିତ୍କାର କରି ଦୌଡ଼ି ଆସିଲା, ଏବଂ କାନ୍ଦି କାନ୍ଦି ବାପା ଉପରେ ଲୋଟି ପଡ଼ିଲା, ପୁଣି ଭିତରକୁ ପାଣି ଆଣିବାକୁ ଦୌଡ଼ିଲା । ପାଣି ଆଣିଲା, ପିଇବାକୁ ଦେଲା କିନ୍ତୁ ନା; ସେ ଆଉ ପାଣି ପିଇବେ ନାହିଁ । )

'ତା—ଭାଇ ! ଭାଇ ! ବୋଉ ! ବାପା···ଆଉ···ନାହାନ୍ତି ?

ଶିଶିର—( ଚହଳ ଉଠୁଥିବା କୋହକୁ ଓଠରେ ଚାପିଦେଇ ଆଖିରୁ ଶ୍ରାବଣୀର ଧାର ଛୁଟେଇ ଦେଇ appoint letter କୁ ଚିରୁଥିଲେ ) ତାଙ୍କୁ ଯିବାକୁ ଦେ, ଲତା ! ସେ ଜେଲଖାନାରୁ ଯେଉଁ ଖସି ନେଇ ଆସିଥିଲେ, ସେଇ ଖୁସିକୁ ସାଥିକରି ଏ ବ୍ୟର୍ଥ ପୃଥିବୀରୁ ଚାଲି ଯାଆନ୍ତୁ ।

ସାବଣୀ—( ଆସୁ ଆସୁ ) ଲତା ! ଶିଶିର ! କଣ ହେଲା ? (ବାହାରୁ ଆସିଛନ୍ତି ଅମର )

ଅମର—ମୋର appoint letter ଅସି ଯାଇଛି ଶିଶିର ! ଅଉ ଗୋଟେ ଶୁଭ ଖବର, ମଞ୍ଜୁଷା ସବୋତ୍କୃଷ୍ଟ ପୋଲିସ କର୍ମଚାରୀ ହିସାବରେ ରାଜ୍ୟ ସରକାରଙ୍କ ପୁରସ୍କାର ଲାଭ କରିଛନ୍ତି । ଅଜର news ( ସମସ୍ତଙ୍କୁ ନିରୁତ୍ତର ଦେଖି ) ଆରେ, ଏ କଣ ? ମଞ୍ଜୁଷା··· ।

ଶିଶିର—ସେ prize ତାଙ୍କ ଭାଗ୍ୟରେ ନାହିଁ ଅମର ।

ଅମର—ଏଁ ! !

ଶିଶିର—ସରକାରଙ୍କ prize ପାଇବା ଆଗରୁ ସେ ଚାଲି ଯାଇଛନ୍ତି ଅମର !

ଅମର—ଶିଶିର ! !

ସାବଣୀ—ନା ! ! ( ଦୁଇ ହାତର ଚୁଡ଼ି ଜୋରରେ ପିଟି ଦେଲେ, କାଚ ଝଣ୍ ଝାଣ୍ କରି ଭାଙ୍ଗିଗଲା )

( ଅନ୍ଧାର )

—o—

## ॥ ଅଷ୍ଟମ ଦୃଶ୍ୟ ॥

ଯୋଗେଶ ପଟ୍ଟନାୟକଙ୍କ ସାଜସଜ୍ଜା

ବିସ୍ମିତ ବାହାର ଘର । ସକାଳର ମାରବଟାକୁ ଘଣ୍ଟ ଦେଇ ବଟଣା ଆରମ୍ଭ କରି ଦେଇଥାନ୍ତି ମିଶ୍ର ଓ ଯୋଗେଶ—

ଯୋଗେଶ—( କଷ୍ଟ କଷ୍ଟ ଆସିଲେ ) ତୁମକୁ ବିଶ୍ୱାସ କରିବା ମୋର ଗୋଟେ ମସ୍ତବଡ଼ ଭୁଲ ।

ମିଶ୍ର—ହରିବୋ, ସବୁ ଗୋବିନ୍ଦ, ଏଇଟାକୁ ଗୋଟେ ଜୁଆ ଖେଳ ବୋଲି ଧରି ନିଅନ୍ତୁ ପଟ୍ଟନାୟକେ ।

ଯୋଗେଶ—କେବଳ ତୁମରି ପାଇଁ ମୁଁ ଲାଜକୁ ବୋହିଚାଲ । ଗୀତା ବରଂ ଭଲଥିଲା ।

ମିଶ୍ର—ହେଃ ହେଃ ସେଇଥିପାଇଁତ ତାକୁ ମାରି ଦିଆଗଲା ।

ଯୋଗେଶ—କେବଳ ତୁମରି ଜାଲରେ ପଡ଼ି, ମୁଁ ଆଜ ଅଣନିଶ୍ୱାସୀ ହୋଇଯାଉଛି ।

ମିଶ୍ର—କେଉଁଟର ଜନ୍ମ ଜାଲ ବିଛେଇବା ପାଇଁ, ଆଉ ମାଛର ଜନ୍ମ ଜାଲରେ ପଡ଼ିବା ପାଇଁ । ଏଥିରେ କାହାରି କିଛି କରିବାର ନାହିଁ ।

ଯୋଗେଶ—ଓ..., ମୁଁ ବୁଝିପାରୁଛି ତୁମର ଉଦ୍ଦେଶ୍ୟ ।

ମିଶ୍ର—ବହୁତ ଡେରିରେ ବୁଝିଲେ ଆଜ୍ଞା !

ଯୋଗେଶ—ବାସ୍ତବିକ, ଟିକଏ ଆଗରୁ ଜାଣି ପାରିଥିଲେ, ଗୃହଲକ୍ଷ୍ମୀ ମୂଳଠୁ ପାଇଁ ସୋମନାଥ ମହାନ୍ତି ଭଳି ବନ୍ଧୁ

ହଙ୍କେଶ ଭଳ ଯାଇନଥା'ନ୍ତା । ଗୀତାଭଳି ଲକ୍ଷ୍ମୀ ମୋର କଲେଜିଙ୍କରେ ଚୋଡ଼ି ଯାଇନଥା'ନ୍ତା । ସୁରେଶ, ସୁବୋଧ ଭଳି ପୁଅମାନେ ସାମାଜିକ କଳଙ୍କକୁ ମୁଣ୍ଡରେ ଧରି ପ୍ରଳାପ କରୁ ନ ଥା'ନ୍ତେ ।

ମିଶ୍ର– କିନ୍ତୁ ଆପଣଙ୍କ ଅତୀତଟା ସେଇମିତି ଅନ୍ଧକାର ଭିତରେ ରହିଯାଇଥାନ୍ତା ।

ଯୋଗେଶ—ମୋର ଅତୀତ··· ··· ? ( ଆଶ୍ଚର୍ଯ୍ୟରେ )

ମିଶ୍ର ସାବତ୍ରୀ କେମିତି ଅନ୍ଧ ହେଲ । ଜଗନ୍ନାଥ ମହାନ୍ତି କେମିତି ଜେଲଗଲେ । ସୋମନାଥର କେମିତି ମୃତ୍ୟୁ ହେଲା । ସେତେବେଳେ ଯୋଗେଶ ଚଟ୍ଟନାୟକ କେମିତି ଗୋଟେ ଘଣ୍ଟରେ ଲକ୍ଷପତି ହୋଇଗଲେ ।

ଯୋଗେଶ—( ଗର୍ଜି ଉଠିଲେ ) ସେତେବେଳେ ମୋ ବିଶ୍ୱାସରେ ବିଷଦେଇ······

ମିଶ୍ର ଆପଣ ତ ସୋମନାଥ ମହାନ୍ତିର ସରଳ ବିଶ୍ୱାସରେ ବିଷଦେଇ ତାହାର ଜଣେ ସଚ୍ଚୋଟ ପୋଲିସକୁ ଦୁନିଆ ଆଗରେ ଅପରାଧି ସଜେଇ ଦେଇପାରିଲେ । ସାବତ୍ରୀ ଆଖିରେ ନକଲି ଔଷଧ ପକେଇ ତା'ଙ୍କଠୁ ସର୍ବସ୍ୱ ଲୁଟି ଆଣିଲେ ।

ଯୋଗେଶ—ମିଶ୍ରେ ! ଇସ୍ କ ବିଶ୍ୱାସଘାତକ ତୁମେ !

ମିଶ୍ର – ତୁଇ ବନ୍ଧୁ ସାଙ୍ଗ ହୋଇ ଜଗନ୍ନାଥ ମହାନ୍ତିକୁ arrest କରିବାକୁ ଯାଇଥିଲେ । ସେ ଜଗନ୍ନାଥକୁ ଥାନାକୁ ନେଇଗଲେ । କିନ୍ତୁ ଆପଣ ତା ସ୍ତ୍ରୀ ଉପରେ ଅତ୍ୟାଚାର କରି ତାକୁ ଆତ୍ମହତ୍ୟା ଭିତରକୁ ଠେଲି ଦେଲେ ଏବଂ

ଭାରତରେ ଥିବା ସୁନା ରୁପା ବୋଝ ଆଣି ଗୋଟେ ଗର୍ତ୍ତରେ ଲକ୍ଷପତି ହୋଇଗଲେ । କିନ୍ତୁ ସବୁଗଲା ସୋମନାଥ ମହାନ୍ତି ନାଁରେ, ତା ଷ୍ଟକସ ବି ଗଲା । ଶେଷରେ ବଚସ ମଲା······

ଯୋଗେଶ - ଅଡ଼···ଜଗନ୍ନାଥ ମହାନ୍ତିର ଝିଅକୁ ବାହା କରି ମୁଁ କିଣ ସେ ସମ୍ପତ୍ତିର ମାଲିକ ହୋଇପାରିବ ?

ମିଶ୍ର—ହୋଇପାରନ୍ତ । କିନ୍ତୁ ମନେ ଅଛି, ତା'ର ଗୋଟେ ପୁଅଥିଲା··· ···ସେ ଆଜି ପ୍ରତିଶୋଧ ନେବାପାଇଁ ଘୂରିବୁଲୁଛି । ( ହଠାତ୍ ଇନ୍ଦ୍ରଜିତର ଆବିର୍ଭାବ )

ଇନ୍ଦ୍ର—ଆଜି ମୁଁ ସେହି ଇନ୍ଦ୍ରଜିତ ମହାନ୍ତି । ମୋ ଅତୀତର ହିସାବ ନିକାସ ପାଇଁ ବ୍ୟଗ୍ର ହୋଇ ଧାଇଁ ଆସିଛି ।

ଯୋଗେଶ—( ଭୟ ଓ ଆଶ୍ଚର୍ଯ୍ୟରେ ଚାହିଁଲେ ) । ମୁଁ କିଛି ଜାଣେନା ।

ଇନ୍ଦ୍ର—ଅବଶ୍ୟ, ୨୨ ବର୍ଷର ପୁରୁଣା କଥା ସହଜରେ ମନେ ଥାଇ ନପାରେ । ତେଣୁ ମୋ ସମ୍ପତ୍ତିର ତାଲିକା ମୁଁ ପ୍ରସ୍ତୁତ କରି ଆଣିଛି । ନିଅନ୍ତୁ (ବ୍ୟାଗ୍‌ରୁ ଦଲିଲ୍ ଦେଲେ) ଗୋଟେ week ଭିତରେ ମୁଁ ମୋ ସମ୍ପତ୍ତି ଚାହେଁ ଏବଂ ତା ସହିତ ମୋ ବଂଶ ପ୍ରତି ଅତୀତରେ ଅତ୍ୟାଚାର କୈଫିୟତ୍ ମଧ୍ୟ ମୋ ପାଖରେ ସମସ୍ତ ଖୁବ କମ୍ । ଯାଉଛି, ଆସିବ ଠିକ୍ ସାତ ଦିନପରେ—ନମସ୍କାର (ଝଡ଼ ବେଗରେ ଚାଲିଗଲେ )

ମିଶ୍ର—ହେଃ, ହେଃ, ହରିହେ ରଖେ ଗୋବିନ୍ଦ

ଯୋଗେଶ—ଏଯାଏ ଯାହା କହୁ ହୋଇଯାଉଛି ସବୁ ତୁମର କୁପରବର୍ଣରେ

ମିଶ୍ର—ଗଛକୁ ଜଡ଼ରେଇ ଦେଉଛି ଯେତେବେଳେ ମୂଳରୁ ଗଣ୍ଡିର ଦେବା ଦାୟିତ୍ୱଟା ମୋର, ତେଣୁ ଆଜ ସଞ୍ଜରେ ଗାଁର ଲୋକଙ୍କୁ ଏକାଠି ବସେଇ ଆପଣଙ୍କ ଅସଲ ରୂପଟା ଖୋଲ ଦେବାର ବନ୍ଦୋବସ୍ତ କରୁଛି । ହଉ, ନମସ୍କାର ପଞ୍ଚନାୟକେ । ହେଃ ହେଃ ( ଚାଲିଗଲେ )

( ଯୋଗେଶ ହତ୍ଭମ୍ବ ହୋଇ ଏଣେତେଣେ ବୁଲୁଥାନ୍ତି, ଅସିଛି ସୁବୋଧ)

ସୁବୋଧ—ଧ୍ୱଂସର ଜଉଘର ଭିତରକୁ ଠେଲିଦେଇ ବନ୍ଧୁ ତୁମର ଚାଲିଗଲେ କ ବାପା ?

ଯୋଗେଶ - ( ପ୍ରକୃତିସ୍ଥ ହୋଇ ସୁବୋଧ !

ସୁବୋଧ – ସୁବୋଧ ନୁହ ପାଇଛି ବାପା ! ତା ନାଁରେ ଜଣେ drunkeredର ସଜୀବ ମୂର୍ତ୍ତି ତୁମର ସାମ୍ନାରେ କେତୋଟି ପ୍ରଶ୍ନଧର ଛିଡ଼ା ହୋଇଛି ।

ଯୋଗେଶ—ମୁଁ ବୁଝିପାରୁଛି ତୋର ପ୍ରଶ୍ନ । କିନ୍ତୁ ଉତ୍ତର ଦେବାକୁ ନିଜକୁ ପ୍ରସ୍ତୁତ କରେଇ ।ାରୁନ, ତଥାପି···ଶୁଣିବ ନଶ୍ଚୟ ।

ସୁବୋଧ—କହି ପାରିବ ବାପା ! ଆମଘରେ ଯୋଉଁ ଯୋଡ଼ଏ ମଦ୍ଦଳ ବାଜଗଲା, ତା ଭିତରେ ଶୁଭ କଏ ଆଉ ଅଶୁଭ କଏ ?

ଯୋଗେଶ—ମତେ ଟିକିଏ ଭାବିବାକୁ ସମୟ ଦେ' ସୁବୋଧ ।

ସୁବୋଧ— ଭାଇ କାହିଁକି ସାରା ଜୀବନଟାକୁ ଜେଲ ଭିତରେ କଟେଇ ଦେବାକୁ ବସିଛନ୍ତି ? ଆମ ଘରଠାରୁ ଜେଲ କଣ ଆହୁରି ସୁଖମୟ ସ୍ଥାନ ?

ଯୋଗେଶ— ଆମ ଘରେ ଆଜି ସୁଖ ନାହିଁ ।

ସୁବୋଧ—ମୁଁ କାହିଁକି ବୋଉଲ ଲୁଗା ଧରା ସଂସାର ଭିତରେ ଚିତ୍କାର କରୁଛି ?

ଯୋଗେଶ—ଏ ସବୁ ମୋର ଅପକର୍ମର ଫଳ ସୁବୋଧ !

ସୁବୋଧ—ଆଉ, ସ୍ୱେ ବ ତୁମେ କହୁଥାଅବ, ଯେଉଁ କଣ ପାଇଁ ଏତେ ସବୁ କରିଗଲ ତା'ର ଭବିଷ୍ୟତ କ'ଣ ହୋଇପାରେ ?

ସୁରେଶ—( ଜେଲ୍‌ରୁ ଆସିଛନ୍ତି ) ବୁଢ଼ା ଯାଉଥିବା ଲୋକର ଆଉ ଭବିଷ୍ୟତ କଣ ହୋଇପାରେ, ସୁବୋଧ !

ସୁବୋଧ—( ଆଶ୍ଚର୍ଯ୍ୟରେ ) ଭାଇ !

ସୁରେଶ— ହଁ, high bloodpressure ଯୋଗୁଁ ଗୋଟେ week ହାସ୍ପିଟାଲରେ ଆସିଛି ।

ଯୋଗେଶ—ସୁରେଶ······ ! ମୋତେ କ୍ଷମାକର-

ସୁରେଶ—ବାପ ସିନା ପୁଅକୁ କ୍ଷମା କରେ ।

ସୁବୋଧ—ଭାଇ ! କାହିଁକି ଏ ଅଶାନ୍ତିର ଘୂର୍ଣ୍ଣିବାତ୍ୟା ଭିତରକୁ ପଶି ଆସିଲ ?

ସୁରେଶ—ବାପା ! ଏତେ ଗୁଡ଼ିଏ ଜୀବନକୁ ନେଇ ଖେଳିଗଲ କାହିଁକି ?

ଯୋଗେଶ - ଅଜଣା କୁଚକ୍ର ମୋତେ ବହୁତ ତଳକୁ ଠେଲିଦେଲା ।

ସୁରେଶ—ଏଥିରେ କଣ ଶାନ୍ତି ପାଇ ପାରିଲ ?

ଯୋଗେଶ –ଫାଶୀ ଖୁଣ୍ଟରେ ନ ଚଢ଼ିଲେ ମୁଁ ଶାନ୍ତି ପାଇବିନ ।
ଚାଲ, ପୋଲିସରେ surrender କରି ଗୀତା ହତ୍ୟାପାଇଁ··· ( ବାହାରିଲେ, ଆସିଛି ଅମର ପୋଲିସ S. I. ସେ, ସାଙ୍ଗରେ କନେଷ୍ଟବଳ )

ଅମର—I am sorry ଅମର ମିଶ୍ର, ପୋଲିସ S I. ଓ୍ୱାରେଣ୍ଟ (ଦେଲେ) ଗୀତା ହତ୍ୟା ମାମଲାର ମୁଖ୍ୟ ଆସାମୀ ରୂପରେ ଯୋଗେଶ ପଟ୍ଟନାୟକଙ୍କୁ Court. nonbail warrant issue କରିଛି ।

ଯୋଗେଶ—ଠିକ୍ ହୋଇଛି, ମୋ ଯିବା ପୂର୍ବରୁ ନିମନ୍ତ୍ରଣ ଆସିଯାଇଛି ।

ସୁବୋଧ, ସୁରେଶ ବାପା ! !

ଅମର—ଏହା ଏକ ଯୌତୁକ ଜନିତ ହତ୍ୟାକାଣ୍ଡ ହୋଇଥିବାରୁ ଆସାମୀଙ୍କୁ ହ୍ୟାଣ୍ଡକପ୍ ସହ ପାଦରେ ଚାଲି ଚାଲି ଯିବାକୁ ପଡ଼ିବ ।

ସୁବୋଧ—ଅମର !

ଅମର—କୋର୍ଟର ନିର୍ଦ୍ଦେଶ, କନେଷ୍ଟବଳ ! ( ହ୍ୟାଣ୍ଡକଫ୍ ଦେବାକୁ ନିର୍ଦ୍ଦେଶ )

ଯୋଗେଶ—ଏହାଦ୍ୱାରା ଅନ୍ତତଃ ଜନତାଠାରୁ କ୍ଷମା ମାଗିବାର ସୁଯୋଗଟା ପାଇ ପାରିବି । ଦିଅ, ଏଇ ହାତ ଦି'ଟାକୁ ବାନ୍ଧି ଦିଅ ! ( ହାତ ବଢ଼ାଇଲେ )

ସୁବୋଧ – ବାପା ! ବ୍ୟସ୍ତ ହେବାର କିଛି ନାହିଁ । କୋର୍ଟରେ ମୁଁ ଚେଷ୍ଟା କରିବି ( ହ୍ୟାଣ୍ଡକପ୍ ପଡ଼ିଲା )

ଯୋଗେଶ—ନା, ସେଥିରେ ମୁଁ ଶାନ୍ତି ପାଇବନି । ସୁରେଶ !
ସୁବୋଧ ! ମୋତେ ଭୁଲିଯାଅ । ଶରୀର ଅବସ୍ଥା ଭଲ
ନୁହେଁ । ତା'ର ଯତ୍ନ ନିଅ, ମୁଁ ଯାଉଛି ।

( ସମସ୍ତଙ୍କ ଆଖିରେ ଲୁହ, ହତାଶ ଓ ଅବସୋସରେ ସମସ୍ତେ
ଚାଲିଗଲେ ନିଜ ନିଜ ବାଟରେ ) ( ଅନ୍ଧାର )

—୦—

## ।। ନବମ ଦୃଶ୍ୟ ।।

ସମସ୍ତ ସେତେବେଳକୁ କବୃତ ବାଟ ଆଗେଇ ଯାଇଥାଏ ।
ଗୋଟିଏ ବଳମିତ ସକାଳ । ଲତା କବାଟ ଖୋଲିବେଇ ।
ନଦରୁ ଉଠି ଆସିଥାଏ, କେଶ ମୁକୁଳା, ଶାଢ଼ୀ ଅସଜଡ଼ା, କବାଟକୁ
ଧରି ଦ'ଣ ଭାବିଲା, ଅତୀତର ସେ ରେଖାଙ୍କିତ ସ୍ମୃତିଗୁଡ଼ାକ
ତା ମସ୍ତିଷ୍କକୁ ଜୋର ପକେଇଲେ—

ସୁବୋଧ—( Voice ) ଆହତ ଗୋଲାପଠାରୁ ଫୁଟନ୍ତା ଗୋଲାପଟା
ଆହୁରି ସୁନ୍ଦର ।

ଇଂଦ୍ର—( Voice ) ଜୀବନର ଯମୁନାତଟରେ ଅନେକ ତାଜମହଲ
ମୁଣ୍ଡ ଟେକନ୍ତି, କିନ୍ତୁ ଭୂଲର ତେଉମାଡ଼ରେ ସମସ୍ତେ ଏମିତି
ଚୂର୍ମାର୍ ହୋଇଯା'ନ୍ତି । ସେ କାଚ ତାଜମହଲର ସମାଧି
ଉପରେ ମୁଁ ଯଦି ସ୍ୱପ୍ନର ତାଜମହଲଟିଏ ତୋଳି ଦଏଁ ।

ଶିଶିର—(Voice) ସେଦିକର ନିଆଁରେ ଜଳିଯା, ଦୁଃଖ ନାହିଁ, କିନ୍ତୁ ଲଜ୍ଜା ପାଇଁ ତୋତେ ବଂଶ ରଖିବାକୁ ହେବ ।

ଇନ୍ଦୁ—(Voice) ଏ ପିତୃକୁଳ କଳଙ୍କୀର ହାତରେ ଆମର ଏ କାହାଣୀ କୁଆଡ଼େ ଲୁଚିପିବ ଲତା ! ସ୍ୱାମୀର ଜୀବନ ପାଇଁ ସାମାନ୍ୟ କେତୋଟି ମୁହୂର୍ତ୍ତ ଆଖି ବୁଜିଦେଇ ପାରୁନ ?

ସୁବୋଧ—(Voice) ଲତା ! ତୁ ମୋର, ଏ ସିନ୍ଦୂର ତୋର, (ଅଙ୍ଗରେ ଅତ୍ୟାଗ୍ନିର ସହ୍ୱପାଣିଲନ, ଝଲ୍‌କାଏ କାନ୍ଥ ବାହାର ଆସିଲ, କାହାରୁ ଆସୁଥିଲେ ଶିଶିର ଚୁକ୍ଷ ଥିଲପର ଜଣା ପଡ଼ୁଥିଲେ, ଲତାର ଏମିତ ଅବସ୍ଥାରେ ସେ ହତ୍ୟାକ୍ତ ହୋଇ ଉଠିଛନ୍ତି ।

ଶିଶିର—ଶାଁକୁ ଯାହା ଶୁଣି ଅସିଲ ସେସବୁ କ'ଣ ତେବେ ସତ ?

ଲତା—(ଲେତକ ଭରା ଆଖିରେ ବୁହଁଶୁ) ହାଇ !

ଶିଶିର—ଡ଼ପକର୍ ! ଶେଷରେ ତୁ ଥିଲୁ ମୋ ମୁଣ୍ଡଟାକୁ ଖେଦେଇ ଖାଇପିବାକୁ । ଏତେ ବଡ଼ ବଂଶର ଝିଅ ହୋଇ ତୁ ଏଇଆ କରିପାରିଲୁ ? ତୋ ରକ୍ତ କ'ଣ ଏତେ ବାହୁ ଅତ୍ୟାଗ୍ନିର ସହ୍ୱପାଣିଲ ? ( ଲତା କେବଳ ତଳକୁ ମୁହଁ ପୋତି ଆଖିର ଶ୍ରାବଣୀରେ ପାଦ ଧୋଇ ଦେଉଥାଏ । ) ତୋତେ ଚୋଟେ ବେଷ ମିଳିଲନ ଦେଇପିବା ପାଇଁ ? କଣ ପାଇଁ ଏତେ ତଳକୁ ଖସିଗଲୁ ? ଭଦ ଘର ମୁଠେ ପାଇଁ ? ଲୁଗା ଖଣ୍ଡେ ପାଇଁ ? ଭଦ, କ'ଣ ପାଇଁ ? ( ଲତାର ନୀରବତା କୁ ସହିନପାରି ) ନା, ମନରେ ଭସ୍ମତାକୁ ରୁଖିବା ପାଇଁ ?

ଲତା—(ସହି ପାରିଲା ନା, ଓଠ ଦୁଇଟିକୁ କେବଳ ଥରେଇ ଦେଇ ଚମକ ଉଠିଲା )

ଶିଶିର— ( ଅଣ୍ଡ-ଉଗ୍ରଂରୂ ହୋଇ ) କହ, କେଉଁ ଅଭାବକୁ ପୂରଣ କରିବା ପାଇଁ ଏତେ ତଳକୁ ଗ୍ଲିଗଲୁ ?

ଲତା—(କାନ୍ଦ) ଭାଇ !

ଶିଶିର—ଚୁପ୍ ! ତୋ ତଣ୍ଟି ଚିପି ମୁଁ ଆଜ ଏ କଳଙ୍କକୁ ଧୋଇ ଦେବ । ତୁ ମରିଯିବା ଉଚିତ (ଅବେଗରେ ତଣ୍ଟି ଧରି) କହ, କଣ ପାଇଁ ଏ କାମ କଲୁ ? ନା ହେଲେ ତୋତେ ଆଜ ଶେଷ କରିଦେବ ।

ସାବିତ୍ରୀ—( ଦଉଡ଼ି ଆସିଲେ ) ଛାଡ଼ିରେ ଶିଶିର ! ସେଇଠାରୁ ତଣ୍ଟି ଚିପିଦେ ଗୋଟେ କଳଙ୍କ ଲଦିହେଉ ।

ଲତା—ବୋଉ !

ଶିଶିର—ମୁଁ ଏ କଥା ସହି ପାରିବନି ବୋଉ !

ସାବିତ୍ରୀ—ମୁଁ ତ ପାରିବନି ଯେଉଁ ସୁଖ ଶାନ୍ତି ପାଇଁ ଏଠିକୁ ଆସିଥିଲି କେଣ୍ ପାଇଲି । ମୋ କଥା ଶୁଣିବନି ।

ମୋତେ ଖୋଜିବନି । ମୋ ବାଟରେ ମୁଁ ଯାଉଛି । ଏ ଘରେ ଆଉ ଲୋଡ଼ାନାହିଁ । ତୁମର ଇଚ୍ଛା ତୁମେ ମର - ବଞ୍ଚ···ତୁମର ଦାୟିତ୍ୱ ।

ଲତା—ବୋଉ ! ······ମୁଁ ମରିଯିବ······ବୋଉ !

ସାବିତ୍ରୀ—ତୁ ମରିଯିବା ଉଚିତ । ( ଗ୍ଲିଗଲେ )

ଶିଶିର—ଯାଅ, ସବୁ ଗ୍ଲିଯାଅ । ମୁଁ କେବଳ ଗୋଟିଏ ପାଦ ନେଇ ସୋମନାଥ ମହାନ୍ତିର ରକ୍ତକୁ ବଢ଼େଇ ରଖିବ ।

ଲତା—ଭାଇ ! ମୋତେ.........( କଣ୍ଟୁ କଣ୍ଠସମ୍ପାଦ ଭ୍ରୁଲଯିବା ଉଦ୍ଦେଶ୍ୟରେ ଫେରପଡ଼ିଲ )

ଶିଶିର—ତୁ ଯିବୁ କୁଆଡ଼େ ? ତୋତେ ମୁଁ ଶେଷ ନ କରି ଛାଡ଼ିବନି । ( ଧରିପକାନ୍ତି )

ଅମର ( ଦୌଡ଼ିଆସିଛନ୍ତି ) ଶିଶିର ! ଏ କ'ଣ କରୁଛୁ ?

ଶିଶିର—( ଅମରକୁ ଚାହିଁଲେ ) ଖୁବ୍ ବାଧୁଛି, ନୁହେଁ ?

ଅମର—ତୁ କ'ଣ କହିବାକୁ ଚାହୁଁ ?

ଶିଶିର—ନରଷ୍ଟ ସତ କଥା ।

ଅମର—Accident ପରେ ତୋ brain କ'ଣ Out of order ହୋଇଯାଇଛି ?

ଶିଶିର—ତା ହୋଇ ନ ଥିଲେ ଏତେ ବଡ଼ ସତ୍ୟଟା କ'ଣ ଉଦ୍‌ଘାଟିତ ହୋଇପାରିଥା'ନ୍ତା ?

ଅମର—ଶିଶିର ! ତୋର ଉଦ୍ଦେଶ୍ୟ ?

ଶିଶିର—ମୋ ଘର ଉପର ଦେଇ ଏତେ ବଡ଼ ଝଡ଼୍‌ଟା ବୋହିଗଲା । ତୁ ବନ୍ଧୁ ହିସାବରେ ତା'ର ସୁଯୋଗ ନେଇ ମୋ ଭଉଣୀର ସର୍ବସ୍ୱ ଟିକକ ଲୁଟି ନେଲୁ ?

ଲତା – ଭାଇ !

ଶିଶିର ତୁ ଚୁପ୍ କର ।

ଅମର—( କିଛି ବୁଝି ନ ପାରି ) ମୋତେ ବିଶ୍ୱାସ କର ଶିଶିର !

ଶିଶିର—ମୋର ସେହି ଅନ୍ଧବିଶ୍ୱାସର ମୂଳରେ ବିଷ ଗଛଟି ଆଜ ମୋ ବଂଶକୁ ମାଟିରେ ମିଶେଇ ଦେଇଛି ।

ଅମର – ତୁ ମୋତେ ଭୁଲ ବୁଝନା ଶିଶିର !

ଶିଶିର – ଏ ଦୁନିଆକୁ ବୁଝ୍। । ସେ କାହିଁକି ତେଙ୍ଗୁର ପିଟୁଛି ।

ଅମର – ତା ବୋଲି ତୁ ....

ଶିଶିର—ଯେଉଁ ହାତରେ ତା ମୁଣ୍ଡରେ ଏତେ ବଡ଼ ବେ ଝ ଲଦ ଦେଇଛୁ ସେହି ହାତରେ ତା ସୀମନ୍ତରେ ସିନ୍ଦୂର ପିନ୍ଧେଇଦେ ।

ଲତା – ଖିଇ !

ଅମର—ଶିଶିର !!

ଶିଶିର—ପାରିବୁ ? ଚୁପ୍ କାହିଁକି ? ତୋତେ ବିବାହ କରିବାକୁ ପଡ଼ିବ ।

ଅମର—ଶିଶିର ! ଚିରଦିନ ଲତାକୁ ମୁଁ ଭଉଣୀ ଆଖିରେ ..

ଶିଶିର—Shut up ( ଉତ୍ତେଜିତ ହୋଇ ଅମର ଗାଲରେ ଗୁସ୍ତାଏ ମାରିଲେ । ଲତା ସହିପାରୁନଥାଏ, ରଘୁ ମିଶ୍ର ଆସି ଦେଖିଛନ୍ତି ଏବଂ ରଗି ଯାଇଛନ୍ତି )

ମିଶ୍ର—କି ? କ'ଣ ହେଲାଣିକି ? ଗୃହ୍ନ ଭୃତ୍ୟ ମୋ ପୁଅ ଉପରେ ହାତ ଉଠେଇଲାଣି ।

ଅମର— ବାପା ! ଆମ ସାଙ୍ଗ ସାଥୀ ଭିତରର କଥା, ତୁମେ କାହିଁକି ମୁଣ୍ଡ ପୂରାଉଛ ?

ମିଶ୍ର—ସାଙ୍ଗ ? ଏ ଚ୍ଛୋଟା ମାଗିଖିଆ ଟୋକା ସାଙ୍ଗ ?

ଅମର—ବାପା !!

ଶିଶିର—ସେହି ଚ୍ଛୋଟା ମାଗିଖିଆର ଭଉଣୀକୁ ତୁମ ପୁଅ ବାହା ହଉଛି, ବୁଝିଲ ?

ମିଶ୍ର—କ'ଣ ହେଲା ? ବ୍ରାହ୍ମଣ ଝିଅ..... ବାହା ହବ ତୋ ଭଉଣୀକୁ ?

( ଲତା ଭିତରକୁ ଯାଉଥାନ୍ତି, ପୁଣି ଫେରିଆସି ବାନ୍ତି )

ଶିଶିର—ଦେଖି ପାରୁନ । ଏ ସେହି ବ୍ରାହ୍ମଣ ଝିଅର କାଣ୍ଡ ।

ମିଶ୍ର—ଅ...ମ...ର ! !

ଅମର ତୁମେ ଚାଲିଯାଅ ବାପା !

ମିଶ୍ର—ତୁ କ'ଣ..... ହଜିହେ.. ... !

ଅମର- ଯାହା ଉଚିତ ମୁଁ ସେଇଆ କରିବ ।

ମିଶ୍ର—ଚୁପ୍ କର ! ଅପଦାର୍ଥ ! ( ଗୃପୁଡ଼ାଏ ପିଟିଲେ ) ରଘୁମିଶ୍ରର ପୁଅ ହୋଇ ଶେଷରେ ଅଜାତିରେ ପଶିଲୁ ? ହରହେ ସଧେ ଗୋବନ୍ଦ, ତୁ ଆଜିଠୁ ମୋର କେହିନୁହଁ ।

ଅମର - ବାପା ! ( ମିଶ୍ର ନ ଶୁଣି ଚାଲିଗଲେ ) ଠିକ ଅଛି ଶିଶିର ! ତୋ ବଂଶର ଇଜ୍ଜତକୁ ନିଷ୍ଠୁରଙ୍କ ରଖିବା ପାଇଁ...ତୋର ଯାହା ଖୁସୀ.. ସେଇଆ ହେବ । ମୁଁ Word ଦେଉଛି ( ଚାଲିଯାଉଥିଲେ )

ଲତା—ଅମର ଭାଇ !

ଅମର—ଅନେକ ଇଜ୍ଜତ ନେଇପାରନ୍ତି, ଦେଇ ନ ପାରନ୍ତି କେତେ ଜଣ ? ( ଚାଲିଗଲେ )

ଲତା—ମୁଁ ପାରିବନି...ଭାଇ !

ଶିଶିର—ପାରିବୁନି ? ଆଉ ସେହି ଜାରଜ ଶିଶୁଟାକୁ ଧରି ମୋ ରକ୍ତ ପିଇବୁ, ନାହିଁ ?

ଲତା—ଭାଇ ! ...ମୋତେ ବିଶ୍ୱାସ କର ।

ଶିଶିର—ତୋତେ ବିଶ୍ୱାସ କରିବାଟା ମୋର ଗୋଟେ ବଡ଼ଟ ଭୁଲ । ଲତା ! ଝିଅ କେବଳ ଆଗକୁ ଯାଏ, ପଛକୁ ଫେରି ପାରେନା , ତୁ ଥରେ ଭାବ ଦେଖ୍ ତୋର ଭବିଷ୍ୟତ କ'ଣ ହୋଇପାରେ — ( ବ୍ୟସ୍ତରେ ଆସିଲେ ସୁରେଶ )

ସୁରେଶ— ଶିଶିର ! ପରୀକୁ ଟାଇଫଏଡ୍, ତା ଅବସ୍ଥା ଟିକେ Serious ସେ କେବଳ ପାଗଳ ପରି 'ମାଉସୀ ମାଉସୀ' ଚିତ୍କାର କରୁଛି । ମାନେ ବହୁତ ଚେଷ୍ଟା କରି ଶେଷରେ କହିଲେ ମାଉସୀକୁ ନ ପାଇଲେ ହୁଏତ ତାକୁ ବଂଚେଇବା·· ଅସମ୍ଭବ ହୋଇ ପଡ଼ିବ ।

ଶିଶିର—ସେଇଥି ପାଇଁ ଲତାକୁ ଦରକାର ପଡୁଛି, ନୁହେଁ ?

ସୁରେଶ—ଶିଶିର ! ଏଇଟା ପ୍ରତିଶୋଧ ନେବା ସମୟ ନୁହେଁ··· ପରୀ ପାଇଁ ତୋ ଗୋଡ଼ ଧରୁଛି ( କାନ୍ଦ ପକେଇଲେ )

ଶିଶିର—ଲତା ଯିବ, ଯେହେତୁ ପରୀର ଜୀବନ ସମସ୍ୟା ଅନ୍ୟ କାହାର ନୁହେଁ । ( ଅନ୍ଧାର )

—o—

## ।। ଦଶମ ଦୃଶ୍ୟ ।।

ପୂର୍ଣ୍ଣିମୀର ଅପରାହ୍ଣ । ରାଂଦ୍ରକାନ୍ତଙ୍କର କକ୍ଷ ଆଗରେ ଝୁଲା ନେଟ୍ ପିନ୍‌ଟା ଝୁଲୁଥାଏ । ଅଳ୍ପ କାଳ ପରେ ଦେଖାଗଲା କକ୍ଷ ଭିତରୁ ଯୁକ୍ତି ତର୍କ ସହ ବାହାର ଆସିଲେ ମିଶ୍ର ଓ ଇନ୍ଦ୍ରକାନ୍ତ ।

ଇଂଦ୍ର – ତା ମାନେ ? ଆପଣ କ'ଣ କହିବାକୁ ଚାହାଁନ୍ତି ?

ମିଶ୍ର—ତୁମର ଯେଉଁଟା ଖେଳ, ଆମ ପାଇଁ ସେଇଟା କାଳ ।

ଇଂଦ୍ର—ଖେଳପାଇଁ ଖେଳାଳୀର ଜନ୍ମ, ଖେଳ ଛଡ଼ା ସେ ଆଉ କିଛି ବୁଝେନା ।

ମିଶ୍ର – ଖେଳରେ ବେଳେ ବେଳେ ଗୋଡ଼ ହାତ ଭାଙ୍ଗିଯାଏ ।

ଇଂଦ୍ର—ତଥାପି ଖେଳାଳୀ ଖେଳନ୍ତି ।

ମିଶ୍ର ଯାହା ହେଲେ ବି ତୁମକୁ କଷ୍ଟସ୍ୱୀକାର କରିବାକୁ ପଡ଼ିବ ।

ଇଂଦ୍ର—ନା ।

ମିଶ୍ର—ତୁମେ ଏ କଥା କହୁ ପାରୁଛ ? କେବଳ ତୁମର ବଂଶ ପାଇଁ ତା ବଂଶଟା ଧ୍ୱଂସ ହୋଇଗଲା, ତୁମେ ଶେଷରେ ତାର ମୁହଁରେ କଳା ବୋଳିଦେଲ ?

ଇଂଦ୍ର—ଯାହା କିଛି ହୋଇଛି, ସବୁ ଆପଣଙ୍କ ପରାମର୍ଶରେ, ତେଣୁ ମୋ ଠାରୁ ଆପଣ ବେଶୀ ଭାବରେ ଦାୟୀ ।

ମିଶ୍ର—ସେଇଥିପାଇଁ ଆଜ ମୋ ମୁଣ୍ଡରେ ସବୁ ପାପ ବୋଳି ହୋଇଗଲା ।

ଇଂଦ୍ର—( ହସି ଉଠିଲେ ) ତା ହେଲେ ଅମର ସାଙ୍ଗରେ ବାହାଘର ହୋଇଯାଉ, କ୍ଷତି କ'ଣ ?

ମିଶ୍ର—ଇଂଦ୍ରଜିତ ? ଉଦ୍ଧବ ମିଶ୍ରକୁ କେବେ ଶତ୍ରୁ ଭାବରେ ଦେଖନା, ଭଲରେ ନ ହେଲେ ଆଉ କିଛି ରୂପଟା ଦେଖିବ ।

ଇଂଦ୍ର—ମୋତେ ଧମକ ଦେଉଛନ୍ତି ?

ମିଶ୍ର—ନା, ସେ ସମସ୍ତ ଆସିବ, ଥରେ ଗୁହିଁ ଦେଖ ତୁମର ଅତୀତକୁ, ବାପ ଜେଲ ଗଲ ଓ ମା ବିଷ ଖାଇ ମଲ ପରେ ତୁମ ଭଉ ଭଉଣୀ ଦୁ'ଜଣଙ୍କୁ ସୋମନାଥ ମହାନ୍ତି ତା' ଘେଟରୁ କାଟି ମଣିଷ କଲ, ଭଉଣୀକୁ ତୁମର ରଜାଝିଅ ପରି ସଜେଇ ବାହା ଦେଲ, ନଜେ ସର୍ବସ୍ୱାନ୍ତ ହୋଇ ଜେଲ ଗଲ, ଶେଷରେ ମଲ କନ୍ତୁ ତୁମକୁ ଅନାଥାଶ୍ରମରେ ଗ୍ଲୁଡ ଆଜର ଲକ୍ଷପତିର ଆସନରେ ବସେଇଲ, ତଥାପି ସେ ତୁମଠୁ କେବେ ପ୍ରତିଦାନ ଆଶା ବି କରି ନ ଥିଲ, କନ୍ତୁ ତୁମେ, ବେଶ୍ ପ୍ରତିଦାନ ଦେଇ ପାରିଛ ।

ଇଂଦ୍ର—( ବସ୍ମିତ ) ଏ କ'ଣ କହୁଛନ୍ତି ଆପଣ ?

ମିଶ୍ର—ମୁଁ ଯାହା କହୁଛି ନଘଟ ସତ କଥା । କେବଳ ମୋ ପ୍ରତିଶୋଧ ପାଇଁ ତୁମକୁ ଅସ୍ତ୍ର ରୂପେ ବ୍ୟବହାର କରୁଥିଲ, କନ୍ତୁ ସେ ଅସ୍ତ୍ର ଆଜ ମୋ ବେକ କାଟିବାକୁ ଯାଉଛି ।

ଇଂଦ୍ର—ତା ହେଲେ ଯାହା ସବୁ ଘଟିଗଲ ସବୁ କେବଳ ଅନ୍ୟାୟ ଅତ୍ୟାଚାର ଛଡ଼ା କଛି ନୁହେଁ.. ଆପଣ କାହିଁକ ମୋତେ ଭୁଲ ବାଟରେ ନେଇଗଲେ ?

ମିଶ୍ର—ମୋ ହତ୍ରିଭ ମୋତେ ଭୁଲ ବାଟରେ ନେଇଗଲ ଇଂଦ୍ରଜିତ ? ଗୋଟିଏ ଖେୟାଲରେ ଗୋଟେ ବଂଶକୁ ଜଳେଇ ଦେଲ ।

ଇଂଦ୍ର—ଆପଣ ହେଉଛନ୍ତି ମୋର ବଡ଼ ଶତ୍ରୁ । ଇସ୍ ! କ ବେଇମାନ ମୁଁ ?

ମିଶ୍ର—ହଁ, ମୁଁ ତୁମର, ଏ ଦୁନଆଁର ବଡ଼ ଶତ୍ରୁ । ମୋର ଅନୁରୋଧ, ସମସ୍ତେ ତ ଗଲେ ଝିଅଟାକୁ ବଂଚେଇ ଦଅ ।

ଇଂଦ୍ର—ଓଃ ମୁଁ କିଛି ବୁଝି ପାରୁନ । ଆପଣଙ୍କୁ ବିଶ୍ବାସ କରି, ମୁଁ ଅଜ - ନା ନା··· ଏ ସବୁ କ'ଣ କହୁଛନ୍ତି ଆପଣ ?

ମିଶ୍ର କେବଳ ମୋତେ ବାଧିବାରୁ ଯଦ୍ଧା ସତ କହିଗଲି । ତୁମେ ଯାହା ବୁଝୁଛ ଭଦ୍ । ଯାଉଛି, ସାବ ଗାଁରେ ଏ କାହାଣୀ ପ୍ରଚାର କରି ମୋ ପାପରୁ ମୁକ୍ତ ପାଇବ ।

( ଚାଲିଗଲେ, ଇନ୍ଦ୍ରଜିତ ବ୍ୟସ୍ତ ତଥା ମର୍ମାହତ ହୋଇ ଏଣେତେଣେ ବୁଲିଲେ, ପଶିଗଲେ ନେଟ୍ ଭିତରକୁ । ବୋତଲ ବାହାର କଲେ । ପିଇଲେ, କ'ଣ ଭାବିଲେ ପୁଣି କଣ୍ଠ ପର୍ଯ୍ୟନ୍ତ ପିଇଗଲେ । ଲାଲ ଆଖିରେ ହଠାତ୍ ଦେଖିନେଲେ ସୋମନାଥଙ୍କ ଛାଇ । ଡ଼ରିଗଲେ ଭୟଙ୍କର ସ୍ବରରେ—

ସୋମନାଥର ଛାଇ ତୁ କେବେ ସୁରଜିତ ? ଇନ୍ଦ୍ରଜିତ ରୂପରେ ଆମକୁ ଡ଼ରେଇବାକୁ ଆସିଥିଲୁ ? ଖୁବ୍ ଡ଼ରେଇଲୁ, କିନ୍ତୁ ମନେ ଅଛି ତୋର ଅଶ୍ଳୀଳତା······ ? ମୁଁ କହିବନି, କାରଣ ଦାନର ପ୍ରତିଦାନ ମୁଁ ଚାହେଁନା । ମୁଁ ଚାହିଁଥିଲି ତୋତେ ମଣିଷ କରିବାକୁ । କିନ୍ତୁ ତୁ ମୋ ପାଇଁ ଭୂତ ବନିଗଲୁ । ଆଜି କିନ୍ତୁ ମୁଁ ନିରବରେ ରହିବିନି । ମୁଁ ଆଜି ଭୂତ ସାଜିଛି ତୋ ଦେହରୁ ମୋ ରକ୍ତଗୁଡ଼ାକୁ ନେଇଯିବାପାଇଁ ଦେ, ଦେ ମୋ ରକ୍ତ !

( ସୋମନାଥ କହି କହି ଆଗେଇଲେ । ଇନ୍ଦ୍ରଜିତ ଡରି ଡରି ପଛେଇଲେ । ପୁଣି ହଠାତ୍ ପଛରେ ସାବିତ୍ରୀର ଛାଇରେ ଡରିଗଲେ । ସୋମନାଥ ଅଦୃଶ୍ୟ, ସାବିତ୍ରୀର ଛାଇ ଇନ୍ଦ୍ରଜିତଙ୍କୁ ଲକ୍ଷ୍ୟ କଲା )

ସାବର୍ଣ୍ଣୀର ସ୍ୱର—ଛି ! ଛି ! ଲଜ୍ଜା ନାହିଁ, ତୋତେ ?
ପିଲାଦିନର କଥା କ'ଣ ଟିକିଏ ହେଲେ ବି ମନେ ନାହିଁ
ତୋର ? ତୋ ପାଇଁ, ତୋ ଭଉଣୀ ପାଇଁ ଆମ
ସର୍ବସ୍ୱାନ୍ତ ହୋଇଗଲୁ । କିନ୍ତୁ ତୁ କ'ଣ କଲୁ ? ତୋ
ବିବେକ କ'ଣ ତୋତେ ବାଧା ଦେଲାନି ? ମୋତେ ଦିନେ ମା'
ବୋଲି ଡ଼ାକୁଥିଲୁ ? ମୁଁ କ'ଣ ତୋତେ ପୁଅ ପରି ସ୍ନେହ
କରୁ ନ ଥିଲି ? ମୋର କ'ଣ ତୋ ପ୍ରତି କମ୍ ମମତା
ଥିଲା ? କିନ୍ତୁ ତୁ ପ୍ରତିଦାନରେ କ'ଣ ଦେଲୁ ? ମୁଁ ବି
ଭୁଲି ନ ଥିଲି । କିନ୍ତୁ ଆଜି ଦେ, ଫେରେଇ ଦେ ମୋ
ସ୍ନେହ, ଫେରେଇ ଦେ ମୋ ମମତା—

( ଅଗେଇଲେ, ଇନ୍ଦ୍ରଜିତ ସେମିତି ପଛେଇଲେ ଡ଼ର ଡ଼ର ।
ପଛରୁ ଶିଶିରର ସ୍ୱର ଆସିଛି, ସାବର୍ଣ୍ଣୀ ଅଦୃଶ୍ୟ )

ଇନ୍ଦ୍ର—ନା ନା ମୋତେ କ୍ଷମା କର ।

ଶିଶିର— କ୍ଷମା, ମୁଁ ଦେବି, ତୁ ପର ମୋ ସ୍ୱର । ତୋତେ ମୁଁ
କେତେ ଭଲ ପାଏ । କିନ୍ତୁ ତୁ ମୋ ଗୋଡ଼ଟା କାଟି
ନେଇଛୁ । ଦେ, ଫେରେଇ ଦେ ମୋ ଗୋଡ଼ଟା, ଦେ,
ଫେରେଇ ଦେ ।

( ଶିଶିର ଆଗେଇଲେ 'ନା' 'ନା' କହି ଇନ୍ଦ୍ରଜିତ ପଛେଇଥିଲେ !
ପୁଣି ବିପରୀତ ଦିଗରୁ ଲତାର ସ୍ୱର ଦେଖି ଇନ୍ଦ୍ରଜିତ ଭୟଙ୍କର
ସ୍ୱରରେ ଡରିଗଲେ )

ଲତା—ସ୍ୱର ସ୍ୱର ! ତୁମ ହାତରେ ମୁଁ ପର ରକ୍ଷୀ ବାନ୍ଧି
ଦେଇଥିଲି । ସେ ସୂତାଟା କ'ଣ ତୁମେ ଛିଣ୍ଡେଇ ଦେଲ ?
ମୋ ରକ୍ଷୀଟା ଚାହେଁଲେ ମୋତେ ଫେରେଇ ଦିଅ
ଦିଅ ମୋ ରକ୍ଷୀଟା, ଦିଅ ।

ଇନ୍ଦୁ—(ଡରିଯାଇ) ନା, ନା, ମୁଁ···ମୁଁ···
ସୋମ ଦେ, ଦେ ମୋ ରକ୍ତ ।
ପାର୍ବତୀ—ଦେ, ଫେରେଇ ଦେ ମୋ ସ୍ନେହ, ମମତା !
କ୍ଷିତିର—ଦେ ମୋ ଗୋଡ଼ଟା ମୋତେ ଫେରେଇ ଦିଅ ।
ଲତା—ଦିଅ, ମୋ ଗଣ୍ଡୀଟା ମୋତେ ଫେରେଇ ଦିଅ ।

(ସମସ୍ତଙ୍କ ମିଳିତ ଆକ୍ରମଣରେ ଇନ୍ଦୁ ବ୍ୟସ୍ତବ୍ୟସ୍ତ ହୋଇ ଚିତ୍କାର କରି ଉଠିଲେ)

ଇନ୍ଦୁ—ଆଃ !! ନା ନା ମୋତେ ··ମୁଁ··· (ତଳେ ପଡ଼ିଗଲେ ଅନ୍ଧାର ପୁଣି Calling Bell ଶବ୍ଦରେ ଲାଇଟ୍ ଜଳିଛି । ଇନ୍ଦ୍ରଜିତ ବାହାରି ଆସିଲେ । ବିପର୍ଯ୍ୟସ୍ତ ବଦନରେ ବାହାରୁ ଆସିଛି ଲତା, ବିପର୍ଯ୍ୟସ୍ତ ବେଶ ଓ ହାତରେ ୫୦୦ ଟଙ୍କା, ମୁହଁରେ ଦୃଢ଼ତା ସହ ଲୁହ, ଇନ୍ଦ୍ରଜିତର ପାଦତଳେ ଟଙ୍କା ତକ ରଖି ଦେଇଛି ଏବଂ ଫେରିଯିବା ସମୟରେ ଇନ୍ଦ୍ରଜିତ 'ଲତା' ବୋଲି ଡାକ ଦେଇଛି । ଏହି ସମୟରେ ଆସିଛି ଅମର । ଉତ୍ତେଜନାର ଶେଷ ପ୍ରାନ୍ତରେ ପାଦଦେଇ)

ଅମର—ଦେ, ଫେରେଇ ଦେ ଇନ୍ଦ୍ରଜିତ ! ଟଙ୍କା ଦେଇ ଯାହା ନେଇଥିଲୁ ଟଙ୍କା ନେଇ ତାକୁ ଫେରେଇ ଦେ !
ଇନ୍ଦୁ—ଅମର !!
ଅମର—ପାରିବୁ ? ଚୁପ୍ କାହିଁକି ?
ଇନ୍ଦୁ ମୋତେ ଟିକିଏ ଭାବିବାକୁ ସମୟ ଦେ ।
ଅମର—ମୁଁ କଣ୍ଠ ଶୁଣିବାକୁ ଏଠିକୁ ଆସିନି ।

(ସୁରେଶ ଆସିଛନ୍ତି)

ସୁରେଶ—ତୋତେ ଲଜ୍ଜା ନାହିଁ !
ଇନ୍ଦୁ—କିଏ ?

ସୁରେଶ—ତୋ ଆଖି ଖରାପ ହୋଇଯାଉଛି ଇନ୍ଦ୍ରଜିତ ! ତୁ ମଣିଷକୁ ଚିହ୍ନି ପାରୁନୁ ।

ଅମର—ସୁରେଶ ଭାଇ ! ଯେ, ଯେଉଁ ମହାପାପ କରନ୍ତି ତାକୁ ପ୍ରାୟଶ୍ଚିତ୍ତ ଆସିବା ଉଚିତ ନୁହେଁ ।

ସୁରେଶ—ତୁ ସେହି ଇନ୍ଦ୍ରଜିତ ! ବାପ ଜେଲ ଗଲା ପରେ ସୋମନାଥ ମହାନ୍ତି ଘରରେ ବଞ୍ଚିଥିଲୁ !

ଅମର—କହ, ତୁ କ'ଣ ସେହି ଇନ୍ଦ୍ରଜିତ ନୋହୁଁ ?

ଇନ୍ଦ୍ର—ଓଃ······ମୋତେ ଟିକଏ ସମୟ ଦିଅ !

ସୁରେଶ—ତୁ ସେହି ଇନ୍ଦ୍ରଜିତ ଯାହାର ଭଉଣୀ ପାଇଁ ଗୋଟେ ବଂଶ ଛାରଖାର ହୋଇଗଲା ।

ଅମର—ଆଜି ତୁ ବି ସେହି ଇନ୍ଦ୍ରଜିତ, ଯାହାପାଇଁ ଗୋଟେ ନିରୀହ ଝିଅର ଜୀବନ ଜଳିଗଲା ?

ଇନ୍ଦ୍ର—ମୋତେ ଟିକଏ ବୁଝିବାକୁ ସମୟ ଦିଅ ।

( ଶିଶିର ଆସିଛି )

ସୁରେଶ—ତୋ ଭଉଣୀର ସୀମନ୍ତ ପାଇଁ ସେମାନେ ଦେହରୁ ରକ୍ତ ନିଗାଡ଼ି ଦେଲେ ।

ଅମର—କିନ୍ତୁ ତୁ, ତା ଭଉଣୀର ସୀମନ୍ତରେ କଳା ବୋଳିଦେଲୁ ?

ଶିଶିର—ତୁ ଜଗନ୍ନାଥ ମଉସାଙ୍କ ପୁଅ ?     ( ଘୃଣିଛି )

ଇଂଦ୍ର— ଶିଶିର ! ମୋତେ କ୍ଷମା କର

ଶିଶିର—ଗୋଡ଼ ମୋର କାଟି ଦେଇଛୁ

ସୁରେଶ—ତୁ ଏତେ ନୃଶଂସ ହୋଇପାରିଲୁ ?

( ଶଙ୍କର ଆସିଛି ବ୍ୟସ୍ତରେ )

ଶଙ୍କର— ବାବୁ ! ବାବୁ ! ଶୀଘ୍ର ଆସନ୍ତୁ ।

ସୁରେଶ—କ'ଣ ହେଲା ?

ଶଙ୍କର—ହର ଅପଣଙ୍କର ସଉଗଳ ବାବୁ ! ଏଠି ଆପଣ
କଛି ବୁଦ୍ଧି ପାଇବେନ । ଶୀଘ୍ର ଆସନ୍ତୁ !

ସୁରେଶ—ମୁଁ ଆସୁଛି ଶିଶିର ! କେହି କାହାର ଭବିଷ୍ୟତ ନଷ୍ଟ
କରନା । ( ଶଙ୍କର ସହ ପ୍ରସ୍ଥାନ )

ଶିଶିର—ଇଂଦ୍ରଜିତ ! ଗୋଟେ ଅସହାୟ ଶିଶୁକୁ ମଣିଷ
କରିବା କ'ଣ ଭୁଲ ? ଗୋଟେ ନିସଗ୍ରସ୍ତା ଝିଅକୁ ତା
ମନଲାଖି ଆଶ୍ରୟ ଯୋଗାଇ ଦେବା କ'ଣ ଭୁଲ ?
ଜଣକ ପାଇଁ ନିଜକୁ ଜଳେଇ ଦେବା କ'ଣ ଭୁଲ ?

ଅମର ଆଉ ଗୃହକର୍ତ୍ତ ଲୋଭ ଦେଖାଇ ଜଣେ ବେକାର
ଯୁବକର ଜୀବନକୁ ନଷ୍ଟ କରିଦେବା କ'ଣ ଠିକ୍ ? ଗୃହକର୍ତ୍ତ
ବନ୍ଧନସୂତ୍ରରେ ଗୋଟେ ଝିଅର ଚରିତ୍ରକୁ ନଷ୍ଟ କରିବାକୁ
ଚେଷ୍ଟା କରିବା କ'ଣ ଠିକ୍ ? ଟଙ୍କା ବନ୍ଧନସୂତ୍ରରେ ଗୋଟେ
ଅସହାୟ ଝିଅର ଇଜ୍ଜତକୁ ଲୁଟିନେବା କ'ଣ ଠିକ୍ ?

ଶିଶିର—ତୁ ଚୁପ୍ ରହ ମୋ ଭାଇ ! ଆଜି ଲତା ମୋର ଭଉଣୀ ।

ଅମର—ଭଉଣୀ ଯାଉଛି ଭାଇକୁ ବଞ୍ଚେଇବାକୁ—

ଶିଶିର—ଭାଇ ହୋଇ ତୁ ତା ଜୀବନକୁ ନଷ୍ଟ କରିବୁ !
ବାପା ପ୍ରତିଦାନ ଚାହିଁ ନ ଥିଲେ, ତେଣୁ ତୋତେ ଆମେ
ସଂପୂର୍ଣ୍ଣ ପାଶୋରି ଦେଇଥିଲୁ । କିନ୍ତୁ ତୁ, କୃତଘ୍ନ
ହୋଇଲୁ । ବାପା ଥିଲେ ତୋତେ ଦେଖି ଖୁବ୍ ଖୁସି
ହୋଇ ଥାଆନ୍ତେ ।

ଇନ୍ଦ୍ର—ମୋର ଭୁଲ ହୋଇଛି ଶିଶିର ! ମୋତେ କ୍ଷମା
କର । ତୋ ଗୋଡ଼ ଧରୁଛି ।

ଶିଶିର—ଗୋଡ଼ ? ( ଚାହିଁଲା ) ସେ ଗୋଡ଼ ମୋର କଟି ଯାଇଛି ।

ଅମର—ଛାଡ଼ିବୁ ? ତା ଭଙ୍ଗା ଗୋଡ଼କୁ ଯୋଡ଼ ଦେଇପାରିବୁ ?

ଶିଶିର—ପାରିବୁ ? ଯେଉଁ ହାତରେ ଲତାର ସୀମନ୍ତକୁ କଳା କରି ଦେଇଛୁ, ସେଇ ହାତରେ ତାର ଭବିଷ୍ୟତକୁ ସିନ୍ଦୂରରେ ନାଲି କରି ଦେଇ ପାରିବୁ ?

ଇଂଦ୍ର—ପାରିବ, ନିଶ୍ଚୟ ପାରିବ । ଲତା ଭଳି ଝିଅକୁ ମୁଁ କେବେ ନଷ୍ଟ ହୋଇ ଯିବାକୁ ଦେବନି । ମୋ ଜୀବନ ବିନିମୟରେ ତା' ଜୀବନକୁ ନିଷ୍କଳଙ୍କ ରଖିବି । ମୁଁ ପ୍ରତିଜ୍ଞା କରୁଛି ।

ଶିଶିର—ବେଶ୍, ଚାଲଯା । ( ଇନ୍ଦ୍ର ନ ଶୁଣି ଚାଲିଯାଇଛି ) ଅମର ! ମୋତେ କ୍ଷମା କର ।

ଅମର—ଶିଶିର ! ତୁ ତ ଜାଣୁ, ମୋର ଭଉଣୀ ନାହିଁ । ତେଣୁ ଲତାକୁ ମୁଁ ଖୁବ୍ ସ୍ନେହ କରେ ।

ଶିଶିର—ମୁଁ ତୋତେ ବୁଝି ପାରିନି ।

ଅମର—ଲତା ହାତରେ ୫°° ଟଙ୍କା ଦେଇ ଇଂଦ୍ରଜିତକୁ Charge କରିବାକୁ ଚେଷ୍ଟା କରିଥିଲି । Success ବି ହୋଇଗଲି । ସେହି ଟଙ୍କା ଲତାର ବାହାଘରରେ ଉଠେଇ ଦେବି ।

ଶିଶିର—ମୁଁ ଲତାକୁ କେତେ ଭୁଲ ବୁଝିଛି । ତା ଭଳି ଭଉଣୀ ପାଇଁ ମୁଁ ଗର୍ବୀ । ପୃଥିବୀରେ ଏମିତି ଭଉଣୀ କେତେ ଜଣ ?

( ଏହି ସମୟରେ ଦୌଡ଼ ଦୌଡ଼ ଆସିଲେ ମିଶ୍ର )

ମିଶ୍ର—ମାର ପକେଇଲେ ବଞ୍ଚାଅ ।

ଅମର, ଶିଶିର—କ'ଣ ହେଲା ?

ମିଶ୍ର - ଗାଁର ଲୋକେ ଠେଙ୍ଗା ବାଡ଼ି ଧରି ମୋତେ ଗୋଡ଼େଇଛନ୍ତି ।

ଅମର—ଆମେ କ'ଣ କରିବା ?

ଶିଶିର—କାହିଁକି ?

ମିଶ୍ର - ମୋ ଅଖାଡ଼ର ପାପ ମୋଚନ ପାଇଁ ସେମାନେ ଆଜ ପାଗଳ । ମୋ ଘର ପୋଡ଼ି ଦେଲେଣି ।

ଅମର—ବାପା ! ଉତ୍ତ୍ୟକ୍ତ ଜନତା ହାତରୁ ମୁଁ ତୁମକୁ ବଞ୍ଚେଇ ପାରିବନି ।

ଶିଶିର - ମୁଁ ଅଛୁ ବ୍ୟସ୍ତ ହୁଅନ୍ତୁନି ।

ମିଶ୍ର—ତୋ ଗୋଡ଼ ଧରୁଛି ବାପ !

ଶିଶିର—ଗୋଡ଼ଟା ଅବଶ୍ୟ ମୋର କଟି ଯାଇଛି ।

( ଏହି ସମୟରେ ହାତରେ ଠେଙ୍ଗା ଧରି ଶଙ୍କର ଓ ମନ୍ମଥ ଆସିଲେ )

ଶଙ୍କର—କାହିଁ ? କାହିଁ ସେ ସର୍ବସ୍ୱଖିଆ ?

ଶିଶିର—ଶଙ୍କର ! କାହାକୁ ଖୋଜୁଛ ?

ଶଙ୍କର—ବାବୁ ! ସେଇ ବୁଢ଼ା, ସାରା ଗାଁଟାକୁ ସାରି ଦେଲାଣି ପରା ।

ମନ୍ମଥ—ତାକୁ କ'ଣ ଆମେ ସେମିତି ଛାଡ଼ିବୁ ।

ଶଙ୍କର—କେତେ କଷ୍ଟରେ ବୁଢ଼ା ଧରା ପଡ଼ିଛି ।

ମିଶ୍ର—ହରିବୋ ରାଧା ଗୋବିନ୍ଦ··· ।

ଶଙ୍କର—ଚୁପ୍ ! ଇମିତ କର୍ଣ୍ଣଳଆ କଥା କହ ଆମକୁ ତେର ପାଠ ପଢ଼ାଇଲଣି ।

ମନ୍ଦୁଷୀ—ଆଉ ସେ ଲମ୍ବା କଳଆ ଫଟଫଟିଆ ବାଳ ଭାଇଁ ?

ମିଶ୍ର—ବାବା ଶଙ୍କର ! ମୋ ସମ୍ପତ୍ତିବାଡ଼ ତୁମ ସ୍କୁଲକୁ ଦେଇ ଦେବ, ମୋତେ ଛାଡ଼ିଦିଅ । ହରିହେ ରାଧେଗୋବିନ୍ଦ ।

ଶଙ୍କର—ଆମେ କହୁ ଶୁଣିବୁନ । କେତେ ଛଳରେ ବୁଢ଼ା ଫଟଉଛୁ ଦେଖ ।

ଅମର—ଠିକ୍ ଅଛୁ ଶଙ୍କର ! ସେ ସମ୍ପତ୍ତି ସ୍କୁଲ ନାଁରେ ଥାଉ, ତାଙ୍କୁ ଛାଡ଼ିଦିଅ ।

ଶିଶିର—ନା, ଚାଲ ସମସ୍ତେ ଏକାଠି ମିଶି ଏକ ସମାଧାନ କରିବା ।

ମନ୍ଦୁଷୀ—ବାବୁ ! ଏତେ କଷ୍ଟ ସହୁଛ କପର ?

ଶିଶିର—ଚେଷ୍ଟା କଲେ ସବୁ ସମ୍ଭବ ହେବ, ଆସ ।

ମିଶ୍ର—ହରିହେ ରାଧେ ଗୋବିନ୍ଦ…

( ସମସ୍ତେ ଯିବା ସମୟରେ )

ଅ ନ୍ଧା ର—



## ॥ ଏକମାତ୍ର ଗୀତ ॥

ମର୍ତ୍ତ ତୋ ଦର୍ପଣରେ ସ୍ୱର୍ଗ ସ୍ୱପ୍ନ
ମାନସୀ ଦର୍ପଣରେ ସ୍ୱପ୍ନ ସ୍ୱର୍ଗ

ଲୁହ ଲହୁ ତାଳ ଜଳେ ଯୋଉଁମାନସ ॥ ● ॥
ଗୁଣ୍ଡଚଳେ ଗୁପିଦେଇ କୋଦଣ୍ଡ,
ଆଖିତଳେ ଲୁଖିଦେଇ ଲୁହକୁ,
ଓଠତଳେ ଲୁଚେଇ ତା ଯନ୍ତ୍ରଣା,
ମନତଳେ ମାରିଦେଇ କଳ୍ପନା,
ଯର ଓଠେ ଉଛୁଳେ ହସ ଲହରୀ ॥ ୧

ଏ କୂଳରେ ଝୁରୁଥାଏ ଚକୋର,
ଆର କୂଳେ ହଜିଯାଏ ତା ସ୍ୱର,
ସପନରେ ଭଜି ଭଜି ଚକୋରୀ,
ଅଭିସାର ବାଟ ଖୋଜେ କବରୀ,
ଦେଲେ ମିଳନ ମନ୍ଦିରେ ନାହିଁ ନାଗରୀ ॥ ୨ ॥

ଝିଅଟିଏ ଦେଖିଥିଲା ସପନ,
ବନ୍ଧୁ ହାତେ ବାନ୍ଧିଦେଇ ଜୀବନ,
ଆକାଶେ ତା' ଭରିଦେଇ ସିନ୍ଦୂର,
ଝଡ଼ରେ ବି ଗଢ଼ିବ ତା' ସଂସାର,
ଭାଙ୍ଗିଗଲା ତା' ଜୀବନ ଜାତ ମନ୍ଦିର ॥ ୩ ॥

—※—

ଲତା—ମୁଁ ଘଡ଼ା··· ···

ସୁବୋଧ—ମୁଁ ଖୁଣ୍ଟା—

ଲତା—ମୋ ପଞ୍ଜରେ ସମାଜର ନାଲ ଆଖି—

ସୁବୋଧ—ମୋ ଷଣ୍ଠରେ ଶୋଳସର ଫାଶୀ ଗୁଣ୍ଠ—

ଲତା—ଏ ଦୁର୍ଗ ଭିତରେ ଆମେ ବନ୍ଦୀ ।

ସୁବୋଧ—ସ୍ବଳ ଉଡ଼ିପିବା ଖୁବ ଉଚ୍ଚରୁ—

ଲତା—ପକ୍ଷ ମୋର କ୍ଷତ ବିକ୍ଷତ ।

ସୁବୋଧ—ମୋ ହାତର ରକ୍ତାକ୍ତ ।

ଲତା—ଜଳପଥ କ'ଣ ଆମପାଇଁ ଉନ୍ମୁକ୍ତ ନୁହେଁ ?

ସୁବୋଧ—(ନୌକାକୁ ନିର୍ଦ୍ଦେଶ କରି ) ନୌକା ଆମ
ଅପେକ୍ଷାରେ—

ଲତା—ସ୍ବଳ ଭସିପିବା—

ସୁବୋଧ—ଖୁବ୍ ଦୂରକୁ—

ଲତା—ଦିଗ୍‌ବଳୟ ସେପାରିକୁ—

ସୁବୋଧ—ଏ ପୃଥିବୀ ପାଇଁ ଆମେ ଅନୁପଯୁକ୍ତ—

ଲତା—ଅବରକାଶ ମଧ୍ୟ ।

ସୁବୋଧ—ଏ ଜନ୍ମରେ ଆମେ—

ଲତା—ଦୁଇଟି ସମାନ୍ତର ସରଳରେଖା ।

ସୁବୋଧ—ପରଜନ୍ମ ପାଇଁ—

ଲତା—ଏକ ଚନ୍ଦ୍ରଗାମୀ ଦୁଇଟି ରଶ୍ମି

ସୁବୋଧ—ସେହି ସ୍ବପ୍ନ ପାଇଁ—

ଲତା—ଆସ ତପସ୍ୟା କରିବା ।

ସୁବୋଧ—( ବଂଶୀଟି ବାହାର କରି )
ଯୋହାପିସ୍ନମ୍ ସାଇଓନାରଡ୍ !

ଲତା—( ବିସ୍ଫାରିତ ଚକ୍ଷୁରେ ) ଫୋଲଡ଼ର !

ସୁବୋଧ—ଆମପାଇଁ ପୁଷ୍ପକଯାନ—

ଲତା ଆମକୁ ସ୍ୱର୍ଗକୁ ନେଇଯିବ—

ସୁବୋଧ ଆମେ ଉଡ଼ନ୍ତ ସ୍ୱର୍ଗର ସନ୍ଧାନରେ

ଜନସ୍ରୋତ ହେ ପୃଥିବୀ ନମସ୍କାର ! ( ନୌକାରେ ବସିଲେ, ସମାଜ ରକ୍ଷକ ଅନ୍ଧ ଓ ପଙ୍ଗୁ ହୋଇ ମଞ୍ଚରେ ଛିଡ଼ା ହୋଇଥାଏ ସେମାନେ ଚିତ୍କାର କରି ହସି ହସି, ଦୌଡ଼ିଆସିଛନ୍ତି ଇନ୍ଦ୍ର )

ଇନ୍ଦ୍ର · ଲତା ! ଲତା ! ଫେରିଆସ ! ( ସ୍ୱପ୍ନଯାନ ଦେଖିନେଲେ ହତାଶହୋଇ )

ଲତା ଫେରଯାଅ. ମୁଁ ବହୁଦୂରରେ···

ଇନ୍ଦ୍ର···ତୁମପାଇଁ ମୁଁ ସିନ୍ଦୂର ଆଣିଛି ଲତା !

ଲତା ସା'ସ ସମାଜକୁ ଲାଲ କରିଦିଅ ।

ସୁବୋଧ ତୁମେ ହାରିଯାଇଛ ଇନ୍ଦ୍ରଜିତ ?

ଇନ୍ଦ୍ର ( ଆଖିରେ ଲୁହ ) ବାସ୍ତବରେ ମୁଁ ହାରିଯାଇଛି ।

( ସିନ୍ଦୂର ଫରୁଆକୁ ନଈରେ ଭସେଇ ଦେଲେ । ସୁବୋଧ ଲତା ହସି ହସି ପରସ୍ପର ନିକଟରେ ଛିଡ଼ା ହୋଇଲେ, ନୌକା ଧୀରେ ଯାଉଥାଏ ଖୁବ୍ ଦୂରକୁ ସମାଜ ଗୋଟେ ହାତରେ ଖୁବ୍ କରୁଣ ସ୍ୱରରେ ମନ୍ତ୍ର ବକେଇ ଦେବା, ଇନ୍ଦ୍ରଜିତ ହାତ ହଲଉଥା'ନ୍ତି, ନୌକା ଲୁଚିଗଲା ମନ୍ତ୍ର ବନ୍ଦ ହୋଇଗଲା )

ସମାଜ ଫେରିଆସ ଯୁବକ

ଇନ୍ଦ୍ର···( ଭ୍ରୁକୁଞ୍ଚିତ ହୋଇ ) କିଏ ?

ସମାଜ···ଭଗ୍ନଭରସା, ମୁଁ ରକ୍ଷକ ।

ଇନ୍ଦ୍ର···ରକ୍ଷକ ? ?

ସମାଜ—ଦେଖିପାରୁଛ, ମୋର ଗୋଟେ ହାତ ନାହିଁ । ଗୋଟେ ଆଖି ଫୁଟି ଯାଇଛି । ଗୋଡରେ ବେଡ଼ି । ତଥାପି ଦନ୍ତହୀନ ପାଟିରେ ପିଇ ଚାଲିଛି ମଣିଷରକ୍ତ ।

ଇନ୍ଦ୍ର—କାହିଁକି ?

ସମାଜ—ମୋ ବକ୍ଷ ଦେଖ, କପରି ରକ୍ତରେ ଜୁଡୁବୁଡୁ,

ଇନ୍ଦ୍ର—ରାକ୍ଷସ ! ତୁମେ ରକ୍ତାକ୍ତ କାହିଁକି ?

ସମାଜ—ମୁଁ ସମାଜ । ଯୌତୁକ ଓ ବେକାର ମୋର ବଂଶଧର ସେନାପତି, କନ୍ତୁ ଦେଖି ପାରୁଛ ମୋ ବକ୍ଷରେ ସେମାନେ କେମିତି ଗୃବୁକ ପରେ ଚାବୁକ ପିଟି ଚାଲିଛନ୍ତି । ମୋତେ ସେମାନେ ଅନ୍ଧ କରି ଦେଲେ, ମୋ ହାତ କାଟି ନେଲେ, ମୋ ଗୋଡ଼ର ବେଡ଼ି ଦେଇ ମୋ ଉପରେ···(କାନ୍ଦିଲେ)

ଇନ୍ଦ୍ର—ସମାଜ ! ତୁମେ କାନ୍ଦୁଛ ?

ସମାଜ-ମୋ ଲକ୍ଷ୍ୟ ପୋଛି ପାରିବ ଯୁବକ !

ଇନ୍ଦ୍ର—ନିଶ୍ଚୟ ପାରିବ ।

ସମାଜ—ତେବେ ନିଅ ଏହି ଯୋଡ଼ମଡୁଗ ! ଏ ବଦର ଗ୍ରାଭରେ ଚଢ଼ି ଥରେ ସେ ମଡୁଗକୁ ବଜାଇ ଦିଅ । ପାରିବ ?

ଇନ୍ଦ୍ର—ମୁଁ ପ୍ରତିଜ୍ଞା କରୁଛି, ହେ ସମାଜ ! ଦିଅ ତୁମ ଯୋ·· ଡ଼··ମ···ଡୁ-ଗ !!

ମଡୁଗ ନେବା ସମୟରେ ନର୍ତ୍ତ ଆସିଛୁ

* ଯ ବ ନି କା *

## ଶେଷ.........

ସେଇ ନଈ କୂଳରେ ସୁସଜ୍ଜିତ ନୌକା । ପୂର୍ଣ୍ଣିମାର ଆକାଶ ହସୁଥାଏ । ମନ୍ଦିରରେ ଆରତି ଘଣ୍ଟା ଶବ୍ଦ ଯାଉଥାଏ । ଆଲୁଅର ସ୍ରୋତରେ ଦେଖାଗଲା ମୁକୁଳା କେଶ ଓ ଅଧରକାନ୍ତି ଶରୀରକୁ ନେଇ ବସିଥାଏ ଲତା, ପଛରୁ ହଠାତ୍ ରକ୍ତାକ୍ତ ହୋଇ ଛପି ଛପି ବାହାର ଆସିଲେ ସୁବୋଧ—

ସୁବୋଧ—ଲତା !

ଲତା—( ଚମକି ଉଠି ) କିଏ ?

ସୁବୋଧ—ସ ! ମୋ ପଛରେ ପୋଲିସ ।

ଲତା—କାହିଁକି ?

ସୁବୋଧ—ମୁଁ ଖୁନ୍ କରିଛି ।

ଲତା—( ଆଶ୍ଚର୍ଯ୍ୟରେ ) ସୁବୋଧ ଭାଇ !

ସୁବୋଧ—ବିବାହ ପୂର୍ବରୁ ଲିଲି ଅନ୍ତଃସତ୍ତ୍ୱା ହୋଇଥିଲା । ମୁଁ ସହି ପାରିଲିନି ।

ଲତା—ତେବେ କଣ...... ?

ସୁବୋଧ—ଏ ମନ୍ଦିରରେ ଲୁଚିଥିଲି ।

ଲତା—କାହିଁକି ?

ସୁବୋଧ—ତୋ ସହିତ ଶେଷ ଦେଖାପାଇଁ ।

ଲତା—ମୁଁ ବି ତୁମକୁ ଖୋଜୁଥିଲି ।

ସୁବୋଧ—ମୋ ସାଙ୍ଗରେ ଯିବୁ ?

ଲତା—ମୁଁ କିନ୍ତୁ ଅଗ୍ନିପରୀକ୍ଷା ଦେଇପାରିବିନି ।

ସୁବୋଧ—ମୋ ପାଇଁ ବି ଅଯୋଧ୍ୟାର ସିଂହଦ୍ୱାର ବନ୍ଦ୍ ହୋଇ ଯାଇଛି ।